# ଉତ୍କଳ ଗୀତି

ରଚନା :
**ଶ୍ରୀ ପ୍ରଫୁଲ୍ଲ କୁମାର ଶତପଥୀ**
ଗ୍ରା./ପୋ- ସିଂହାପୁର, ଭାୟା- ଧର୍ମଶାଳା, ଜିଲ୍ଲା- ଯାଜପୁର
ମୋ. : ୮୦୧୮୧୪୩୯୫୮

ପ୍ରକାଶିକା :
**ସରୋଜିନୀ ଶତପଥୀ**
ଗ୍ରା./ପୋ- ସିଂହାପୁର, ଭାୟା- ଧର୍ମଶାଳା
ଜିଲ୍ଲା- ଯାଜପୁର

ପ୍ରଚ୍ଛଦ :
**ଶୁଭାଙ୍ଗୀ ତ୍ରିପାଠୀ**

ଅଳଙ୍କରଣ ଓ ମୁଦ୍ରଣ :
**କମ୍ପ୍ୟୁପ୍ରିଣ୍ଟ**, ଲିଙ୍କ୍ ରୋଡ୍, କଟକ
ମୋ-୯୪୩୭୨୭୩୮୮୦

ପ୍ରଥମ ପ୍ରକାଶ : ୨୦୧୭

ମୂଲ୍ୟ : ଟ.୬୦.୦୦ (ଷାଠିଏ ଟଙ୍କା ମାତ୍ର)

# ଅଭିମତ

କବିତ୍ୱ ହେଉଛି ଏକ ବିଭୁଦତ୍ତ ଗୁଣ, ଯାହାକି ସବୁ ଲୋକଙ୍କଠାରେ ସମ୍ଭବ ନୁହେଁ । କବିତା ସୃଷ୍ଟି କରିବା କବିର ନିଜସ୍ୱ ଆଦେଶ ଉପରେ ଆଧାରିତ । ଜୀବନର ଛୋଟବଡ଼ ବାସ୍ତବତା ଓ ସାମାଜିକ ଜୀବନର ନିତିଦିନିଆ ଘଟଣାବଳି କବିଙ୍କୁ ପ୍ରଭାବିତ କରିଥାଏ । ଉତ୍କଳ ଗୀତିର କବି ବୃତ୍ତିରେ ଜଣେ ଶିକ୍ଷକ ଜୀବନରେ ଅସଂଖ୍ୟ ଛାତ୍ରଛାତ୍ରୀଙ୍କୁ ସେ ଶିକ୍ଷାଦାନ କରିଛନ୍ତି । ସେ ଚାହିଁଥିଲେ ସେମାନଙ୍କୁ ଜଣେ ଜଣେ ଆଦର୍ଶ ମଣିଷ ଭାବେ ଦେଖିବା ପାଇଁ । ମାତ୍ର ଚାକିରୀରୁ ଅବସର ଗ୍ରହଣ କରିବା ପରେ ତାଙ୍କର ଆଶା ସମ୍ପୂର୍ଣ୍ଣ ମଉଳି ଯାଇଛି ।

ଉତ୍କଳ ଜନନୀ ବହୁ ଆଦର୍ଶ ବ୍ୟକ୍ତିଙ୍କୁ ଜନ୍ମ ଦେଇଛି । ସେମାନଙ୍କର ତ୍ୟାଗ ଦେଶଭକ୍ତି ଓ ଜୀବନଚର୍ଯ୍ୟା ଉଦ୍‌ବୁଦ୍ଧ କରିଛି କବିଙ୍କୁ । ଆଜିର ଯୁବ ସମାଜ ଯେପରି ପୂର୍ବ ସୂରୀମାନଙ୍କ ପ୍ରତି ବୀତସ୍ପୃହ ହୋଇ ସ୍ୱାର୍ଥ କୈନ୍ଦ୍ରିକ ଭାବରେ ଜୀବନ ଯାପନ କରୁଛନ୍ତି ତାହା କବି ଶ୍ରୀ ଶତପଥୀଙ୍କୁ ବ୍ୟଥିତ କରିଛି । ଉତ୍କଳୀୟ ରୀତି ନୀତିରୁ ବିଚ୍ୟୁତ ହୋଇ ଆଜିର ଯୁବଗୋଷ୍ଠି ଯେପରି ପାଶ୍ଚାତ୍ୟ ସଭ୍ୟତାକୁ ଅନ୍ଧଭାବରେ ଅନୁକରଣ କରିବାର ପ୍ରୟାସ ଜାରି ରଖିଛନ୍ତି କବିଙ୍କ ମନରେ ତାହା ଗଭୀର ରେଖାପାତ କରିଛି । ଓଡ଼ିଶାର ବରପୁତ୍ରମାନଙ୍କ ବିଷୟରେ ତାଙ୍କ ଛାତ୍ରଛାତ୍ରୀମାନଙ୍କର ଅଜ୍ଞତା କବିଙ୍କୁ ଏହି ଆଦର୍ଶ ବ୍ୟକ୍ତିମାନଙ୍କ ସଂପର୍କରେ ଲେଖିବା ପାଇଁ ପ୍ରେରଣା ଦେଇଛି ।

ପ୍ରାରମ୍ଭରେ କବି ଉତ୍କଳ ଜନନୀଙ୍କର ବନ୍ଦନା ଗାଇଛନ୍ତି । ତା'ପରେ ଓଡ଼ିଆ ଜାତିର ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ବନ୍ଦନା । ଓଡ଼ିଶା ଗଠନର ମୁଖ୍ୟ ବିନ୍ଧାଣି ମଧୁ ବାବୁବାବୁଙ୍କୁ ଆଜିର ଯୁବଗୋଷ୍ଠି ଭୁଲିଯିବା କଥା ଉଲ୍ଲେଖ କରି ସେ ଲେଖିଛନ୍ତି –

ତଥାପି ଶୋଇଛି ଏ ଓଡ଼ିଆ ଜାତି
ଏବେ ବି ଉଠଇ ନାହିଁ
ତୁମରି ଆହ୍ୱାନ ତୁମ [illegible]
ତା କାନେ ପଡ଼ିବ କାହିଁ ।

ଉତ୍କଳମଣି ଗୋପବନ୍ଧୁ ଓଡ଼ିଆ ଜାତିର ସେବାରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କ ତ୍ୟାଗ ନିଷ୍ଠା ଓ ଗୋଦାବରୀଶ ନୀଳକଣ୍ଠ ହରିହର ଆଦି

ତତ୍କାଳୀନ ଯୁବ ଗୋଷ୍ଠୀକୁ ଆଦର୍ଶ ବ୍ୟକ୍ତିଭାବେ ଗଢ଼ି ତୋଳିବାରେ ତାଙ୍କର ପ୍ରଚେଷ୍ଟା ମନେ ପକାଇ କହି ଲେଖିଛନ୍ତି -

ବକୁଳ ବନର ମହକ ଯାଇଛି
ସୁବାସ ଜଗାଏ ପ୍ରାଣେ
କେତେଯେ ମଣିଷ ତିଆରି କରିଛ
କହିଦିଏ କାନେ କାନେ ।

ପାରଳା ମହାରାଜା 'ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଅବଦାନ ଏ ଜାତି ଆଦୌଭୁଲିବା କଥା ନୁହେଁ । ମଧୁବାବୁ ଉତ୍କଳ ସମ୍ମିଳନୀପରି ଯେଉଁ କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ ତା'ର ମୁଣ୍ଡିମାରିଥିଲେ କୃଷ୍ଣଚନ୍ଦ୍ର । ସେ ନଥିଲେ ଓଡ଼ିଶା ଗଠନ ସମ୍ଭବ ହୋଇ ପାରିନଥାନ୍ତା । ରାଜସୁଖ ତ୍ୟାଗକରି ପାରଳା ରାଜକୋଷରୁ ଖର୍ଚ୍ଚ କରି ସେ ଓଡ଼ିଶା ଗଠନ ଲାଗି ପ୍ରାଣପାତ ଉଦ୍ୟମ କରିଥିଲେ । ଆଜିର ଯୁବଗୋଷ୍ଠୀ ତାଙ୍କ ସଂପର୍କରେ ଆଦୌ ଅବହିତ ନୁହନ୍ତି । କବି ତାଙ୍କ 'ଚିର ନମସ୍ୟ' କବିତାରେ ଲେଖିଛନ୍ତି -

ଚିର ନମସ୍ୟ କୃଷ୍ଣଚନ୍ଦ୍ର ତୁମେ
ପାରଳାର ମହାରାଜା
ଓଡ଼ିଆ ଜାତିର ତ୍ରାଣ କର୍ତ୍ତା ବୋଲି
ସାରା ଜଗତରେ ବାଜୁଛି ବାଜା ।

ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ଓଡ଼ିଶାର ବରପୁତ୍ର ଜୟୀ ରାଜଗୁରୁ, ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ବାଜି ରାଉତ, ଲକ୍ଷ୍ମଣ ନାୟକ, ରାଣୀଶୁକଦେଇ ଓ ରଘୁ ଦିବାକର ଆଦି ସଂଗ୍ରାମୀମାନଙ୍କର ସ୍ମୃତି ଚାରଣ କରି କବି ଗାଇଛନ୍ତି -

ମୃତ୍ୟୁଞ୍ଜୟ ତୁମେ ମୃତ୍ୟୁକ ଡରିନା
ଧନଞ୍ଜୟ ତୁମେ ଉତ୍କଳେ ଭୁଲନା
ଦମ୍ଭ ରଖିଅଛ ତୁମେ ଏ ମାଣି ମାଆର
ପ୍ରଲୋଭନ ଧମକରେଡରିନା କାହାର ।

ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିବା ଓଡ଼ିଆ ବୀର ପୁରୁଷମାନଙ୍କ ମଧ୍ୟରେଚନ୍ଦନ ହଜୁରୀ, ଚକରା ବିଷୋଇ, ଦଳ ବେହେରା ବିର୍ସାମୁଣ୍ଡା ଓ ଖୋରଧାର ପାଇକମାନଙ୍କୁ ବୀରତ୍ୱ ସଂପର୍କରେ ଅବତାରଣା କରି ସମ୍ମାନ ଜଣାଇ କବି ଲେଖିଛନ୍ତି -

ହୃଦଭରା ଶ୍ରଦ୍ଧା ଅର୍ପଣ କରୁଛୁ
ସଶ୍ରଦ୍ଧ ପ୍ରଣାମ ଗ୍ରହଣ କର ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ନେତାଜୀ ସୁଭାଷ ଚନ୍ଦ୍ର ବୋଷ୍, ଉତ୍କଳ କେଶରୀ ମହତାବ, ମା' ରମାଦେବୀ ଓ ଋଷିପ୍ରାଣ ନବକୃଷ୍ଣ ଚୌଧୁରୀଙ୍କର ସ୍ମୃତିଚାରଣ କରିଛନ୍ତି କବି ଶ୍ରୀ ଶତପଥୀ । କଳାପାଣିର ପ୍ରଥମ ଓଡ଼ିଆ ସହିଦ 'ହଟ୍ଟ ସିଂ' ଆଣ୍ଡାମାନର ସେଲୁଲାର ଜେଲ୍‌ରେ ବହୁ ନିର୍ଯ୍ୟାତନା ସହି ଦୁର୍ବଳ ଶରୀରରେ ଯେପରି ଆତ୍ମତ୍ୟାଗ କଲେ ସେଥିପାଇଁ କବି ଲେଖିଛନ୍ତି -

ରଖିଗଲ ଆମର କିରତି
ଧନ୍ୟ ହଟ୍ଟ ସିଂ ତୁମେ
ଘେନ ହେ ପ୍ରଣତି ।

ଏହି କବିତା ସଂକଳନଟି ରଚନା କରି କବି ପ୍ରଫୁଲ୍ଲ କୁମାର ଶତପଥୀ ମାତୃଭୂମି ପାଇଁ ଚରମ ତ୍ୟାଗ ସ୍ୱୀକାର କରିଥିବା ଉତ୍କଳ ଜନନୀଙ୍କର ଯେଉଁ ବରପୁତ୍ରମାନଙ୍କ ବିଷୟରେ ଲେଖିଯାଇଛନ୍ତି ସେମାନଙ୍କ ସଂପର୍କରେ ଆଜିର ଯୁବଗୋଷ୍ଠୀ ଆଦୌ ଅବହିତ ନୁହନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏସବୁ ଐତିହାସିକ ତଥ୍ୟ ଜାଣିବା ପାଇଁ ପ୍ରାୟ କାହାର ଆଗ୍ରହ ନାହିଁ । ସମସ୍ତେ ଧାଇଁଛନ୍ତି ସ୍ୱାର୍ଥ ଅର୍ଥ ଓ କ୍ଷମତା ପଛରେ । ମାତୃଭୂମି ମାତୃଭାଷା ଓ ଜାତିର ଉନ୍ନତି ଦିଗରେ କାହାର ନିଘା ନାହିଁ ଏହି କବିତା ସଂକଳନରେ ଯେତେ ବରପୁତ୍ରମାନଙ୍କ ବିଷୟରେ କବି ଆଲୋକପାତ କରିଛନ୍ତି ପୁସ୍ତକଟି ପାଠକଲେ ପାଠକ ହୃଦୟରେ ଦେଶାତ୍ମବୋଧକ ଭାବନା ସୃଷ୍ଟି ହେବା ନିଶ୍ଚିତ ମନେ ହୁଏ । କବିତା ସମୂହରେ ବ୍ୟବହୃତ ଭାଷା ନେଟ୍ ସରଳ ଓ ସାବଲଳ ହୋଇଛି । ସାଂପ୍ରତିକ କାଳରେ ପଦ୍ୟମୟ ଛନ୍ଦହୀନ ଓ ଦୁର୍ବୋଧ୍ୟ କବିତାମାନଙ୍କ ପ୍ରାବଲ୍ୟ ମଧ୍ୟରେ ପ୍ରଫୁଲ୍ଲ ବାବୁଙ୍କର ଗୀତି ପୂର୍ଣ୍ଣ ଛନ୍ଦମୟ କବିତାଗୁଡ଼ିକ ନିଶ୍ଚୟ ପାଠକପୀୟ ଆଦର ଲାଭ କରିବ ।

ଡକ୍ଟର ଗୁରୁପ୍ରସାଦ ମହାନ୍ତି
ରାଜ୍ୟ ସଭାପତି
ଉତ୍କଳ ସମ୍ମିଳନୀ



# 'ଉତ୍କଳ ଗୀତି'ରେ
# ଜାତୀୟ ଜୀବନର ଶଙ୍ଖନାଦ

ପ୍ରଫେସର ବିଜୟ କୁମାର ଶତପଥୀ

ଶିକ୍ଷକ ଓ କବି ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଶତପଥୀଙ୍କର କବିତା ସଂକଳନ 'ଉତ୍କଳ ଗୀତି' ପାଠକରି ଆନନ୍ଦରେ ଅଭିଭୂତ ହେଲି । ଶ୍ରୀଯୁକ୍ତ ଶତପଥୀ ଥିଲେ ମଧୁପୁର ହାଇସ୍କୁଲର ଜଣେ କୃତବିଦ୍ୟ ଶିକ୍ଷକ । ସାହିତ୍ୟିକ ଅଭିରୁଚି ସଂଗକୁ ନାଟକ, ସଂଗୀତ ପ୍ରଭୃତିର ପୃଷ୍ଟପୋଷକତା ସେ କରୁଥିଲେ । ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କଲେ ମଧ୍ୟ ସେ ସ୍ୱେଚ୍ଛାକୃତ ଭାବରେ ଶିକ୍ଷକତାକୁ ଗ୍ରହଣ କରିନେଇଥିଲେ ଓ ନିଜକୁ ଜଣେ ଦକ୍ଷ ଶିକ୍ଷକ ଭାବରେ ପ୍ରତିପାଦନ ମଧ୍ୟ କରିଥିଲେ । ସେତେବେଳେ ମଧୁପୁର ହାଇସ୍କୁଲ ଥିଲା ଓଡ଼ିଶାର ଅନ୍ୟତମ ବନବିଦ୍ୟାଳୟ । ସ୍ୱାଧୀନତା ପୂର୍ବର ସତ୍ୟବାଦୀ ବନବିଦ୍ୟାଳୟର ସ୍ମୃତି ସଂତେ ଯେପରି ଜାଗ୍ରତ କରୁଥିଲା ଯାଜପୁର ଜିଲ୍ଲାର ବ୍ରାହ୍ମଣୀ ତଟବର୍ତ୍ତୀ ଉକ୍ତ ଶିକ୍ଷାନୁଷ୍ଠାନଟି । ଶିକ୍ଷାଦାନ ସହ ଡିବେଟ୍, ନାଟକାଭିନୟ, ସଂଗୀତ, ଖେଳକୁଦ ପ୍ରଭୃତି ଏହି ହାଇସ୍କୁଲଟିକୁ ଚଳଚଞ୍ଚଳ କରି ରଖିଥିଲା । କଲଣର ମାଇନର ସ୍କୁଲ ଓ ହାଇସ୍କୁଲ ଗୋଟିଏ କ୍ୟାମ୍ପସ୍‌ରେ ଥିବାଯୋଗୁ ଓ ଚତୁର୍ଦ୍ଦିଗରେ ଛାୟାପ୍ରଦାନକାରୀ ଆମ୍ବ, ପଣସ, ନାରୀକେଳ, ଗୁବାକ ଆଦି ବୃକ୍ଷ ପରିବେଷ୍ଟିତ ହୋଇଥିବା ଯୋଗୁ ଏହାର ପରିବେଶ ଥିଲା ଆକର୍ଷଣୀୟ ଓ ଚିତ୍ତାକର୍ଷକ । ମୋ ଭାଗ୍ୟରେ ସେହି ପରିବେଶ ମଧ୍ୟରେ ରହି ଦୀର୍ଘଦିନ ଛାତ୍ର ହେବାର ସୁଯୋଗ ଘଟିଲା ନାହିଁ । ମାଇନର ସ୍କୁଲରେ ମାତ୍ର ଦି'ଟା ବର୍ଷ (୪ର୍ଥ ଓ ୫ମ ଶ୍ରେଣୀ) ପଢ଼ି ମତେ ଏନ୍.ସି. ହାଇସ୍କୁଲରେ ଷଷ୍ଠ ଶ୍ରେଣୀରେ ଆଡ଼ମିସନ କରିବାକୁ ପଡ଼ିଲା । ସେଠାରେ ମାଟ୍ରିକ୍ୟୁଲେସନ ଶେଷ ପର୍ଯ୍ୟନ୍ତ ପଢ଼ିଲି । ମୋ ଗାଁର ଓ ମୋ ଗାଁ ଆଖପାଖର ପ୍ରିୟ ବନ୍ଧୁମାନେ ମଧୁପୁର ହାଇସ୍କୁଲରେ ପଢ଼ା ଶେଷ କଲେ ଓ କଲେଜରେ ପଢ଼ିଲା ପରେ ଭିନ୍ନ ଭିନ୍ନ ବୃତ୍ତିକୁ ଆପଣେଇ ନେଲେ । ସେହିପରି ଜୀବନର ନାନା ଘାତ ପ୍ରତିଘାତ ମଧ୍ୟରେ ମୁଁ ମଧ୍ୟ ଶିକ୍ଷକତା କଲି ବିଭିନ୍ନ ମହାବିଦ୍ୟାଳୟରେ ଓ ୟୁନିଭରସିଟିରେ ।

କିନ୍ତୁ ମୋର ବୟସ ଯେତେ ଅଧିକ ହୋଇଛି ମଧୁପୁର ଶିକ୍ଷାନୁଷ୍ଠାନ ଦ୍ୱୟର (ମାଇନର ସ୍କୁଲ ଓ ହାଇସ୍କୁଲ) ସ୍ମୃତି ମତେ ଅଧିକରୁ ଅଧିକ ଆଲୋଡିତ କରିଛି ଓ ସେହି ଶିକ୍ଷାନୁଷ୍ଠାନ ଦ୍ୱୟ ସହ ନିବିଡ଼ ଆତ୍ମୀୟତା ମଧ୍ୟ ସୃଷ୍ଟି ହୋଇଛି ।

ମନେହୋଇଛି ତାହା ମୋର ଜୀବନ ବିଦ୍ୟାଳୟ ଓ ସେଇଠି ସବୁବେଳେ ଛାତ୍ର ହୋଇ ରହିଛି । ଶିକ୍ଷକ ଶ୍ରୀଯୁକ୍ତ ଶତପଥୀ ମତେ ପାଠ ପଢ଼େଇ ନଥିଲେ ବି ସେ ମୋର ଗୁରୁପ୍ରତିମ । ତାଙ୍କଠାରୁ ମୁଁ ଅଭିନୟ ଓ ବକ୍ତୃତା କଳା ଶିଖିଛି । ଅଭିନୟ ମଧ କରିଛି ମଧୁପୁର ସ୍କୁଲ ପ୍ରାଙ୍ଗଣରେ ମଞ୍ଚରେ । ଛାତ୍ରାବସ୍ଥାରେ ଓ ଚାକିରୀ ଜୀବନରେ ଗାଁକୁ ଆସି ତାଙ୍କ ସହିତ ବିଭିନ୍ନ ଆଲୋଚନାରେ ମଧ ଭାଗ ନେଇଛି । ସେତେବେଳେ ମଧୁପୁର ହାଇସ୍କୁଲ ଥିଲା ସେ ଅଞ୍ଚଳର ସାଂସ୍କୃତିକ ପ୍ରାଣକେନ୍ଦ୍ର । ପ୍ରଧାନ ଶିକ୍ଷକ ବିଶିଷ୍ଟ ପ୍ରାବନ୍ଧିକ ବୈକୁଣ୍ଠନାଥ ରଥଙ୍କ ସହିତ ତାଙ୍କର ସହଯୋଗୀ ପ୍ରଫୁଲ୍ଲ ସାର୍ ଓ ଅନ୍ୟ ସ୍ମରଣୀୟ ଶିକ୍ଷକ ବୃନ୍ଦ ଏହି ଅଞ୍ଚଳର ସାଂସ୍କୃତିକ ପ୍ରବାହକୁ ଯେପରି ପ୍ରସାରିତ କରିଥିଲେ ତାହା ଆଜି ମନେ ପଡୁଛି ।

ସାରଙ୍କର ଇଛା ମୁଁ ତାଙ୍କର ଏହି କବିତା ଗ୍ରନ୍ଥ 'ଉତ୍କଳ ଗୀତି'ର ଆଲୋଚନାଟିଏ ଲେଖେ । ମୋପରି ଜଣେ ଅକିଞ୍ଚନ ତାଙ୍କ ରଚନାର ମୂଲ୍ୟାଙ୍କନ ନେଇ ସମୀକ୍ଷାଟିଏ କିପରି ଯେ ଲେଖିବି ତାହା ଜାଣିପାରୁ ନାହିଁ । ଗୁରୁଙ୍କର ମାନସ ସନ୍ତାନ ସଂପର୍କରେ ତେଣୁ ମୋର ଅନୁଭବରୁ ଯାହା ଦି'ପଦ ଲେଖୁଛି । ଏହାକୁ ଏକ ସାଧାରଣ ପାଠକର ପ୍ରତିକ୍ରିୟା ବୋଲି ଗ୍ରହଣ କରାଯାଇପାରେ ।

ସ୍ରଷ୍ଟାଙ୍କର ୩୨ଟି ମନୋଜ୍ଞ କବିତାର ସମାହାର ହୋଇଛି 'ଉତ୍କଳ ଗୀତି' । ସତେଯେପରି ଗ୍ରନ୍ଥଟି ହେଉଛି ଉତ୍କଳ ଜନନୀଙ୍କ ଗଳାରେ ସମର୍ପିତ ହେବା ପାଇଁ ଥିବା ଭିନ୍ନ ଭିନ୍ନ ରକମର ୩୨ଟି ଫୁଲରେ ଗୁନ୍ଥା ହୋଇଥିବା ଏକ ମାଳା । ଫୁଲଗୁଡ଼ିକ କବିଙ୍କର ଚେତନା ପ୍ରସୂତ ପୁଣି ମାଳାଟି ମଧ ମନେହେଉଛି ଏକ ନିପୁଣ ମାଳାକାରର ଦକ୍ଷ ଅଙ୍ଗୁଳି ଚାଳନାର ଫଳଶ୍ରୁତି । ପୁଣି ଏହାକୁ ମଧ ୩୨ ଦଳଯୁକ୍ତ ଏକ ସୁବାସିତ ପଦ୍ମଫୁଲ ବୋଲି କୁହାଯାଇପାରେ ଯାହା ପ୍ରସ୍ଫୁଟିତ ହୋଇଛି ଉତ୍କଳ ଜନନୀଙ୍କ ପାଦରେ ଲାଗି ହେବାପାଇଁ । କବିତାଗୁଡ଼ିକର ଖିଅ ଲମ୍ବି ଆସିଛି ଉତ୍କଳ ଜନନୀର ବନ୍ଦନା ଓ ଉତ୍କଳର ପରମ ଆରାଧ ଦେବତା ଜଗନ୍ନାଥ ମହାପ୍ରଭୁଙ୍କଠାରୁ ଉତ୍କଳ ବରପୁତ୍ରମାନଙ୍କ ପର୍ଯ୍ୟନ୍ତ ଓ ଉତ୍କଳର ବୀରା ରମଣୀମାନଙ୍କ ପର୍ଯ୍ୟନ୍ତ । ଏଥିରେ ସ୍ଥାନ ପାଇଛି ମୁକୁନ୍ଦଦେବ ମଧୁବାବୁ, ବାଜିରାଉତ, ଲକ୍ଷ୍ମଣ ନାୟକ, ଜୟୀ ରାଜଗୁରୁ, ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ରାଣୀ ଶୁକଦେଇ, ରଘୁଦିବାକର । ଦଳବେହେରା, ସୁଭାଷ ବୋଷ, ଚକରା ବିଷୋଇ, ଚନ୍ଦନହକୁରୀ, ନବକୃଷ୍ଣ

ଚୌଧୁରୀ, ଧରଣୀଧରଙ୍କ ପ୍ରସଙ୍ଗ । ଜାତିପାଇଁ ସେମାନଙ୍କର ଆତ୍ମୋତ୍ସର୍ଗର କାହାଣୀ ଲିପିବଦ୍ଧ କବିତାଗୁଡ଼ିକରେ । ଏହା ସହିତ ଧଉଳି ପାହାଡ଼ ଓ ପ୍ରଥମ ସ୍ୱାଧୀନତା ସଂଗ୍ରାମ ପାଇକ ବିଦ୍ରୋହର ଗାଥା କବିତା ସଂକଳନଟିର ଶ୍ରୀବୃଦ୍ଧି ଦିଗରେ ସହାୟକ ହୋଇଛି ।

କବିତାଗୁଡ଼ିକ ମନଯୋଗ ସହକାରେ ପଢ଼ିଲାପରେ ହୃଦ୍‌ବୋଧ ହେଉଛି ଯେ ଅତୀତ ଯେପରି କବିଙ୍କର ଗୋପନ ହୃଦୟରେ କଥା କହିଛି । ସେ କେଉଁ ଦୂର ଦୂର ଅତୀତର କଥା । ବୀର ଓଡ଼ିଆଙ୍କର ଜୀବନ ଗାଥା । ସେମାନଙ୍କର ଲୁହ ଓ ଲହୁର କଥା । ସମୂହ ପାଇଁ ଓ ଜାତି ପାଇଁ ପ୍ରାଣବଳି ଦେବାର ଦୁଃସାହସିକତା । ଜାତୀୟ ଜୀବନର ମର୍ମବାଣୀରେ ସଂଚିତ କାଳଜୟୀ ଗାଥାଗୁଡ଼ିକ କାବ୍ୟିକ ଆବେଗରେ ମଣ୍ଡିତ ହୋଇ ସତେ ଯେମିତି ଝରିପଡ଼ିଛି ଏହି କବିତା ଗୁଡ଼ିକରେ । ଉଲ୍ଲେଖଯୋଗ୍ୟ ଯେ ସାର୍ଥକ ଗାଥା କବିତାର ବୈଶିଷ୍ଟ୍ୟ ସମୂହ ବହନ କରିଛି ସଂକଳନସ୍ଥ କବିତାଗୁଡ଼ିକ । ସଂକଳନସ୍ଥ ଆଦ୍ୟ କବିତା 'ବନ୍ଦେ ଉତ୍କଳ ଜନନୀକୁ' ଉଦାହରଣ ସ୍ୱରୂପ ଦିଆଯାଉ । କବି ଉତ୍କଳ ଜନନୀଙ୍କୁ ସମ୍ବୋଧନ କରି ବରପୁତ୍ରମାନଙ୍କର ଗାଥାଗାନ ପାଇଁ ସୂଚନା ଦେଇଛନ୍ତି !

''ତୋ ଗାଥା ଗାଇବା ପାଇଁ
ମନେ ନାହିଁ ମୋ ଭାଷା
ତଥାପି ଲେଖିବା ପାଇଁକି
ମନେ ବାନ୍ଧିଛି ଆଶା ।
କଲ୍ୟାଣମୟୀ ମାଆ ମୋ
ତୋର ଆଶିଷ ବାରି
ମୋ ମଥା ଉପରେ ସର୍ବଦା
ପଡ଼ିଥାଉ ଲୋ ଝରି ।''

ଏପରିକି କବି ଆମର ଲୋକସଂଗୀତର ବୃତ୍ତରେ ଓଡ଼ିଆ ଜାତିର ପୂର୍ବ ଗୌରବ ଓ ଯଶର ମହିମା ଗାନ କରିଛନ୍ତି । କଳିଙ୍ଗଯୁଦ୍ଧର ଲୋମହର୍ଷଣକାରୀ ବିଭୀଷିକା ଓ ସମ୍ରାଟ ଅଶୋକଙ୍କର ଚାରିତ୍ରିକ ରୂପାନ୍ତରଠାରୁ ଆରମ୍ଭ କରି ଓଡ଼ିଆ ପାଇକମାନଙ୍କର ଅପୂର୍ବ ସାହସ ଓ ଆତ୍ମବଳି ତଥା ଓଡ଼ିଶାର ମାଟିକୁ ଧନ୍ୟ

କରିଥିବା ଯଶସ୍ୱୀ ସନ୍ତାନମାନଙ୍କର ଗୁଣଗାନ କରିଛନ୍ତି କବିତାରେ ଫୁଲବଉଳବେଣୀ ଶୀର୍ଷକ କବିତାରେ । କବି ଗାଇଛନ୍ତି -

''ଉଠମୋ ଓଡ଼ିଆ ଭାଇଲୋ
ଫୁଲ ବଉଳ ବେଣୀ
ଜାତି ଗଉରବ ପୂରୁବ କୀରତି
ଫେରାଇ ଆଣିବା ପାଇଲୋ
ଫୁଲ ବଉଳ ବେଣୀ ।
ଏ ଜାତି ମହାନ ହେଉଲୋ
ଫୁଲ ବଉଳ ବେଣୀ
ଜଗତରନାଥ କାଳିଆ ସାହାନ୍ତ
ଆଶିଷ ବରଷି ଯାଉଲୋ
ଫୁଲ ବଉଳ ବେଣୀ ।''

ସଂକଳନରେ ସ୍ଥାନିତ କବିତାଗୁଡ଼ିକର ଭାଷା ସରଳ ଓ ସାବଲୀଳ ପୁଣି ଶୈଳୀ ମଧ୍ୟ ପରିଚ୍ଛନ୍ନ । କୌଣସି କ୍ଲିଷ୍ଟ ଶବ୍ଦ ସଂଯୋଜନା ନାହିଁ କିମ୍ବା ଶବ୍ଦର ଗୋଲକଧନ୍ଦା ଅର୍ଥୋପ୍ଳବ୍ଧି କ୍ଷେତ୍ରରେ କୌଣସି ବିଘ୍ନ ମଧ୍ୟ ପହଞ୍ଚାଉନାହିଁ । ପ୍ରଥମ ସ୍ୱାଧୀନତା ସଂଗ୍ରାମର ମହାନାୟକ ଜୟୀ ରାଜଗୁରୁଙ୍କ ଗାଥା ଗାନ କରି କବି କହନ୍ତି -

''ଜିତି ପାରିନାହିଁ କାଳ ତୁମେ ମହାକାଳ
ବାନ୍ଧି ପାରିନି ତୁମକୁ ଫିରିଙ୍ଗିର ଜାଲ
ଗରବ ରଖିଛ ତୁମେ ଓଡ଼ିଆ ଜାତିର
ନିରିମମ ମରଣକୁ ତୁମେ କରିନା ଖାତିର
ଚିର ସ୍ମରଣୀୟ
ଚିର ବରଣୀୟ ।
ମୃତୁଞ୍ଜୟ ତୁମେ ମୃତ୍ୟୁକୁ ଡରିନା
ଧନଞ୍ଜୟ ତୁମେ ଉତ୍କଳେ ଭୁଲିନା
ଦମ୍ଭ ରଖିଅଛ ତୁମେ ଏ ମାଟି ମାଆର
ପ୍ରଲୋଭନେ ଧମକରେ ଡରିନା କାହାର
ଚିର ବନ୍ଦନୀୟ ।
ଅଭିନନ୍ଦନୀୟ ।

କବି ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଶତପଥୀଙ୍କର କାବ୍ୟ ଭାବନା ସ୍ୱତଃସ୍ଫୂର୍ତ୍ତ ରୀତିରେ ପ୍ରବାହିତ ହେଉଛି ଏହି ସଂକଳନଟିରେ ଇତିହାସର ମୁଗ୍ଧ ଦୃଶ୍ୟପଟକୁ ସମ୍ମୁଖରେ ରଖି । କବିତାଗୁଡ଼ିକ ପାଠକଲେ ମନେହେବ ସତେ ଯେପରି କବି ଆମ ଜାତୀୟଜୀବନର ୩୨ଟି ଦୃଶ୍ୟପଟକୁ ଆବେଗ ମଣ୍ଡିତ କରି ଥୋଇଛନ୍ତି ପାଠକମାନଙ୍କ ସମ୍ମୁଖରେ । ଜାତି ପ୍ରୀତି ଦେଶାତ୍ମବୋଧ ଆଜି ବିଡ଼ମ୍ବିତ ଆମର ସମାଜ ଜୀବନରେ । ବସ୍ତୁବାଦୀ ମଣିଷ ଆଜି ସ୍ୱାର୍ଥର ଦୌଡ଼ରେ । ବ୍ୟକ୍ତି ସ୍ୱାର୍ଥର ଅଶୁଭ ଅଗ୍ନିରେ ମାନବ ଜୀବନ ଆଜି ଦଗ୍ଧୀଭୂତ । ସଂକଳନପସ୍ଥ କବିତା ଗୁଡ଼ିକର ବାର୍ତ୍ତା ପାଠକମାନଙ୍କର ପ୍ରାଣକୁ ଯେ ଉଦ୍‌ବୁଦ୍ଧ କରିବ ଏଥିରେ ସନ୍ଦେହ ନାହିଁ ।

ସଂକଳନର ଉତ୍ସର୍ଗ ପତ୍ରଟି ହୋଇଛି ଖୁବ୍ ମହତ୍ୱପୂର୍ଣ୍ଣ । ଏହାର ଶୀର୍ଷକ ହେଉଛି 'ଟେକିଦେଲି ତୁମ ହାତେ' । ଏଥିରେ ଶୁଣିବାକୁ ମିଳେ ଜଣେ ଶିକ୍ଷକ କବିର ଅନ୍ତରାତ୍ମାର ପ୍ରତିଧ୍ୱନି । ସମାଜ ଜୀବନ, ଉତ୍ତର ପୀଢ଼ି ପାଇଁ ଏକ ଅଙ୍ଗୀକାରବଦ୍ଧ ଦୃଷ୍ଟିକୋଣ ଏଥିରେ ରୂପାୟିତ । ତାଙ୍କର ଶିକ୍ଷକତା କାଳରେ ସେ ଅତୀତର ଅନେକ ଛାତ୍ରଛାତ୍ରୀମାନଙ୍କୁ ମଣିଷ କରି ଦେଶର ଯୋଗ୍ୟ ଦାୟାଦ ରୂପେ ଗଢ଼ିଥିଲେ । ସେମାନେ ମଧ୍ୟ ରହିଛନ୍ତି ଆଜି ସ୍ମୃତିରେ । ପୁଣି ଆଜିର ଅଗଣିତ ଛାତ୍ରଛାତ୍ରୀ, ଶିଶୁ ଓ କିଶୋର ଯେଉଁମାନେ ଦିନେ ଭବିଷ୍ୟତର ମଙ୍ଗୁଆଳ ହୋଇ ଦେଶ ଓ ଜାତିର ନୌକାକୁ ବାହିନେବେ । ସେମାନେ କବି ଦୃଷ୍ଟିରେ ମଧ୍ୟ ହୋଇଛନ୍ତି ସମଭାବରେ ଗୁରୁତ୍ୱପୂର୍ଣ୍ଣ । କବି ଶିକ୍ଷକତା ବୃତ୍ତିରୁ ଅବସର ନେଲାପରେ ମଧ୍ୟ ନିଜର ଦାୟିତ୍ୱ ସଂପର୍କରେ ସଚେତନ ହୋଇଛନ୍ତି । ତେଣୁ ବର୍ତ୍ତମାନର ପୃଷ୍ଠଭୂମିରେ ଠିଆହୋଇ ସେ ଏକାଧାରରେ ଅତୀତ ଓ ଭବିଷ୍ୟତ ଆଡ଼କୁ ତାଙ୍କର ଦୁଇବାହୁ ପ୍ରସାରିତ କରିଛନ୍ତି ।

ସଂକଳନରେ ସ୍ଥାନିତ କବିତାଗୁଡ଼ିକ ଅତୀତରୁ ପ୍ରେରଣା ସଂଗ୍ରହ କରି ବହନ କରି ଆଣିଛି ବର୍ତ୍ତମାନ ପାଇଁ ବାର୍ତ୍ତା । ଏ ବାର୍ତ୍ତା ଜାତିର, ଗୋଷ୍ଠୀର ତଥା ସମୂହଜୀବନର ମଙ୍ଗଳପାଇଁ ଅଭିପ୍ରେତ । ଜାତୀୟ ଜୀବନକୁ ପରିପୁଷ୍ଟ କରୁଥିବା ଓ ସମୂହ ମଙ୍ଗଳର ଶଙ୍ଖଧ୍ୱନି ଶୁଣାଉଥିବା ଏହି ସଂକଳନର କବିଙ୍କୁ ସଉକ୍ତି ପ୍ରଣାମ ।



# ମୋ ନିଜ କଥା

'ତ୍ୟାଗୀ ଗୋପବନ୍ଧୁ' ଶୀର୍ଷକ ପ୍ରବନ୍ଧରେ ପଢ଼ିଥିଲି ''ଦୁଃଖ କଷ୍ଟର ଅଗ୍ନିଦାହ ମଧ୍ୟରେ ମହାପୁରୁଷମାନଙ୍କର ମହତ ଜୀବନ ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ୱଲ୍ୟମାନ ହୁଏ।'' ଏହା ଏକ ନିରାଟ ସତ୍ୟ। ମହାପୁରୁଷମାନଙ୍କର ଜୀବନାଦର୍ଶ ଆମର ଅନୁକରଣୀୟ। ସେମାନଙ୍କର ତ୍ୟାଗ, ନିଷ୍ଠା, ଦେଶଭକ୍ତି ଓ ଆଦର୍ଶ ଯୋଗୁ ଆମେ ଆଜି ପରାଧୀନତାର ଶୃଙ୍ଖଳରୁ ମୁକ୍ତ। ସେମାନଙ୍କର ଜୀବନୀ ପାଠକରି ସେମାନଙ୍କର ଆଦର୍ଶରେ କିଞ୍ଚିତ୍ ଅନୁପ୍ରାଣିତ ହେଲେ ପ୍ରତ୍ୟେକ ବ୍ୟକ୍ତିର ଚଲାପଥ ନିଶ୍ଚୟ କୁସୁମିତ ହେବ ବୋଲି ମୋର ବିଶ୍ୱାସ। କିନ୍ତୁ ପରିତାପର କଥା ଆଧୁନିକ ଯୁବପୀଢ଼ି ସେ ଆଦର୍ଶରୁ ବିଚ୍ୟୁତ ହେଲାପରି ମନେହୁଏ। ବର୍ତ୍ତମାନର ମୂଲ୍ୟବୋଧ ହୀନ ନିଂଯୁକ୍ତି ସର୍ବସ୍ୱ ପାଠ୍ୟକ୍ରମ ସମସ୍ତଙ୍କୁ ପରମୁଖାପେକ୍ଷି ଦିଗରୁ ଆଗେଇ ନେଉଛି। ଦୀର୍ଘବର୍ଷର ଶିକ୍ଷକତାରୁ ଅଭିଜ୍ଞତା ନେଇ ମୁଁ ଉପଲବ୍ଧି କରିଛି ଯେ ସମସ୍ତେ ଆମର ଶିକ୍ଷା, ସାହିତ୍ୟ, ସଂସ୍କୃତି, ଭାଷା ଓ ପରମ୍ପରା ପ୍ରତି ବିମୁଖ। ଭକ୍ତିଭରା ପ୍ରଣାମ ନମସ୍କାରର ଆନନ୍ଦ ଉପଲବ୍ଧି ନକରି ହ୍ୟାଲୋ, ହାଏ, ବାଏରେ ମଜଗୁଲ। ଥରେ ଶ୍ରେଣୀ ଗୃହରେ ପିଲାଙ୍କୁ ଗୋପବନ୍ଧୁ, ମଧୁବାବୁଙ୍କ ବିଷୟରେ ପଚାରିଲି, ଦୁଃଖର ବିଷୟ କେହି ଉତ୍ତର ଦେଇପାରିଲେ ନାହିଁ। ଏହା ମୋ ମନରେ ଗଭୀର ରେଖାପାତ କଲା। ଯେଉଁମାନେ ଆମ ପୂର୍ବ ସୁରୀଙ୍କ ବିଷୟରେ ଏତେ ଅଜ୍ଞ ସେମାନେ କିପରି ଓଡ଼ିଆ ପଦବାଚ୍ୟ ହେବେ? ସେମାନଙ୍କର ଅଜ୍ଞତା ହିଁ ମୋ ମନରେ ପ୍ରେରଣା ସୃଷ୍ଟି କଲା। ସ୍ଥିର କଲି ପ୍ରଥମେ ଆମ ଓଡ଼ିଶାର ବରପୁତ୍ରମାନଙ୍କ ବିଷୟରେ ସରଳ ଭାଷାରେ କିଛି ଲେଖିବି। କବି ହୋଇ ନଥିଲେ ମଧ୍ୟ ମନର ଆବେଗ ମୋତେ କବିତା ଲେଖିବାକୁ ବାଧ୍ୟ କଲା। ଜାଣେନି କେତେଦୂର ସଫଳ ହୋଇଛି। ଓଡ଼ିଶାର ବହୁତ ଦେଶଭକ୍ତଙ୍କ କଥା ବାକୀ ରହିଛି। ଯେତିକି ପାରିଛି ଲେଖିଛି। ସହୃଦୟ ପାଠକ ପାଠିକା ଏ କ୍ଷୁଦ୍ର ପୁସ୍ତକଟି ପାଠକରି ଦୋଷଥିଲେ କ୍ଷମା କରିବେ ବୋଲି ମୋର ବିନମ୍ର ଅନୁରୋଧ।

*ପ୍ରଫୁଲ୍ଲ କୁମାର ଶତପଥୀ*

# ଟେକିଦେଲି ତୁମ ହାତେ

ହେ ମୋର ପିଲାଏ, ତୁମ ସାଥେ
ଦୀର୍ଘଦିନ ଧରି
ତୁମ ସ୍ନେହ ଶ୍ରଦ୍ଧା ଭକ୍ତି ଓ ସମ୍ମାନ
ହୃଦେ ଅଛି ଭରି ।
ହସି ଖେଳି ନାଚି ତୁମ ସାଥେ
ପଢ଼ାଇଛି ପାଠ
ବେଳେବେଳେ ଭୁଲ୍ କଲେ କାନ ଧରି
ଦେଖାଇଛି ବାଟ ।
ଏବେ ବି ରହିଛ ସାଥେ
ଭୁଲି ନି ତୁମକୁ
ମନ ହୁଏ ପୁଣିଥରେ ଫେରିଯିବି
ତୁମ ନିକଟକୁ ।
ଏ କ୍ଷୁଦ୍ର ପୁସ୍ତିକା ଖଣ୍ଡି
ଲେଖିଛି ସାଦରେ
ଟେକିଦେଲି ତୁମ ହାତେ
ଘେନିବ ଆଦରେ ।

*ତୁମ ସାର୍*



# ସୂଚୀପତ୍ର

# ବନ୍ଦେ ଉତ୍କଳ ଜନନୀ

ଜୟ ମା ଉତ୍କଳ ଜନନୀ
ନମେ ତୋ ପାଦ ତଳେ
ଜନମ ଲଭିଲି ତୋ କୋଳେ
ମୋର କି ପୁଣ୍ୟ ବଳେ ।୧।

ବୀର ପ୍ରସବିନୀ ମାଆଲୋ
ନାହିଁ ତୋ ପଟାନ୍ତର
କି ସୁନ୍ଦର ବନ କାନନ
ନଦୀ ଗିରି କନ୍ଦର ।୨।

ଜନମ ଲଭିଲେ ତୋ କୋଳେ
କେତେ ସାହସୀ ବୀର
ଟେକ ରଖିଗଲେ ତୋରମା
କେବେ ନଇଁନି ଶିର ।୩।

ମଧୁ ଗୋପବନ୍ଧୁ ବାଜିଆ
ବକ୍ସି ଲକ୍ଷ୍ମଣ ବୀର
ଜନମ ଲଭିଲେ ତୋ କୋଳେ
ନମେ ସେ ପଦେ ଶିର ।୪।

ମନ୍ଦିର ମାଳିନୀ ମାଆଲୋ
ତୋର ପବିତ୍ର ଭୁଇଁ
ସାଧୁ ସନ୍ଥ କେତେ ଆସିଲେ
ଗଲେ ତୋ ମାଟି ଛୁଇଁ ।୫।

ବନ ପରବତ ଝରଣା
କେତେ ତୋ ବକ୍ଷେ ଶୋହେ

ଶୋଭାର ଭଣ୍ଡାର ତୋର ମା
ଜନ ମାନସ ମୋହେ ।୬।

ମରାଳ ମାଳିନୀ ଚିଲିକା
ମେଲି ଶୋଭା ପସରା
ଜନମନ ମୋହି ଦିଏସେ
ମନେ ଶାନ୍ତି ଅସରା ।୭।

ତୋ କୋଳେ ଧରିଛୁ ମାଆଲୋ
ଜଗତର ନାଥକୁ
ପତିତ ପାବନ ଡାକଇ
ସତେ ଠାରି ହାତକୁ ।୮।

ଲୀଳାମୟ ପ୍ରଭୁ ଶ୍ରୀକ୍ଷେତ୍ରେ
ଲୀଳା କରୁଛି ବସି
ବାରମାସେ ତେର ପରବ
ଭକ୍ତେ ପାଳନ୍ତି ହସି ।୯।

ତୋ ଗାଥା ଗାଇବା ପାଇଁ କି
ମନେ ନାହିଁ ମୋ ଭାଷା
ତଥାପି ଲେଖିବା ପାଇଁକି
ମନେ ବାନ୍ଧିଛି ଆଶା ।୧୦।

କଲ୍ୟାଣମୟୀ ମାଆ ମୋ
ତୋର ଆଶିଷ ବାରି
ମୋ ମଥା ଉପରେ ସର୍ବଦା
ପଡ଼ି ଥାଉଲୋ ଝରି ।୧୧।



# ଫୁଲ ବଉଳ ବେଣୀ

କଅଁଳିଆ ଦୁବ ଘାସ ଲୋ
ଫୁଲ ବଉଳ ବେଣୀ
ଜନମ ମାଟିର ଟେକ ରଖିବାକୁ
ସରବେ ଆଗେଇ ଆସ ଲୋ
ଫୁଲ ବଉଳ ବେଣୀ ।୧।

କୁଆଁର ପୁନେଇ ଜହ୍ନଲୋ
ଫୁଲ ବଉଳ ବେଣୀ
ପୁରୁବ ଗୌରବ ଫେରାଇବା ପାଇଁ
ସରବେ ହୁଅ ଉଛନ୍ନ ଲୋ
ଫୁଲ ବଉଳ ବେଣୀ ।୨।

ଗୋପ ମଧୁ ଗୋଦାବରୀଶ ଲୋ
ଫୁଲ ବଉଳ ବେଣୀ
ଏ ଜାତିର ଟେକ ରଖିବା ପାଇଁକି
କେତେ ଦୁଃଖ ନେଲେ ବରିଲୋ
ଫୁଲ ବଉଳ ବେଣୀ ।୩।

ଗଙ୍ଗାଠାରୁ ଗୋଦାବରୀ ଲୋ
ଫୁଲ ବଉଳ ବେଣୀ
ଜୟ କରିଥିଲେ ତୋ ପୂର୍ବ ପୁରୁଷେ
ମନେପଡ଼େ କାଲି ପରିଲୋ
ଫୁଲ ବଉଳ ବେଣୀ ।୪।

ଅଶୋକ ମଗଧ ରାଜା ଲୋ
ଫୁଲ ବଉଳ ବେଣୀ

କଳିଙ୍ଗ ବିଜୟ କରିବା ପାଇଁକି
ବଜାଇଲେ ରଣ ବାଜା ଲୋ
ଫୁଲ ବଉଳ ବେଣୀ ।୫।

ଲାଗିଲା ଘୋର ସମର ଲୋ
ଫୁଲ ବଉଳ ବେଣୀ
ଆତ୍ମବଳି ଦେଲେ ସର୍ବହରା ହେଲେ
କେତେ କେତେ ନାରୀନର ଲୋ
ଫୁଲ ବଉଳ ବେଣୀ ।୬।

ଦୟା ନଦୀର କୂଳ ଲୋ
ଫୁଲ ବଉଳ ବେଣୀ
ରଣାଙ୍ଗନ ହେଲା ସମର ଲାଗିଲା
ରକତ ହୋଇଲ ଜଳ ଲୋ
ଫୁଲ ବଉଳ ବେଣୀ ।୭।

ବିଜୟ ଉଲ୍ଲାସେ ମାତି ଲୋ
ଫୁଲ ବଉଳ ବେଣୀ
ଅଶୋକ ରାଜନ କଲେ ନିରୀକ୍ଷଣ
କି କରିଲେ କାହୁଁ ଆସିଲୋ
ଫୁଲ ବଉଳ ବେଣୀ ।୮।

ବୁଦ୍ଧଙ୍କ ଅମର ବାଣୀ ଲୋ
ଫୁଲ ବଉଳ ବେଣୀ
କାନରେ ପଡ଼ିଲା ମନ ବଦଳିଲା
ହୃଦୟ ହୋଇଲା ହାଣିଲୋ
ଫୁଲ ବଉଳ ବେଣୀ ।୯।

ଚଣ୍ଡାଶୋକେ ଧର୍ମାଶୋକେ ଲୋ
ଫୁଲ ବଉଳ ବେଣୀ

ଦେଲା ବଦଳାଇ ଏ କଳିଙ୍ଗ ଭୂଇଁ
ଜାଣିଲେ ଜଗତ ଲୋକ ଲୋ
ଫୁଲ ବଉଳ ବେଣୀ ।୧୦।

ଗଜପତି ପୁରୀ ରାଜା ଲୋ
ଫୁଲ ବଉଳ ବେଣୀ
ଚଳନ୍ତି ପ୍ରତିମା ଠାକୁର ରାଜା ସେ
ଜଗତେ ବାଜୁଛି ବାଜା ଲୋ
ଫୁଲ ବଉଳ ବେଣୀ ।୧୧।

କାଞ୍ଚି ଅଭିଯାନ କାଳେ ଲୋ
ଫୁଲ ବଉଳ ବେଣୀ
ଧଳାକଳା ଘୋଡ଼ା ଚଢ଼ି ଦୁଇଭାଇ
ପାଇକ ବେଶରେ ଚାଲେ ଲୋ
ଫୁଲ ବଉଳ ବେଣୀ ।୧୨।

କୋଣାରକ ଚାରୁ କଳା ଲୋ
ଫୁଲ ବଉଳ ବେଣୀ
ଓଡ଼ିଆ ପୁଅର ନିହାଣ ମୁଗୁର
ଚହଳ ପକାଇ ଦେଲା ଲୋ
ଫୁଲ ବଉଳ ବେଣୀ ।୧୩।

କଟକର ତାରକସି ଲୋ
ଫୁଲ ବଉଳ ବେଣୀ
ଆଖି ଝଲସାଏ ମନ ସରସାଏ
ଦୁନିଆ ଉଠଇ ହସି ଲୋ
ଫୁଲ ବଉଳ ବେଣୀ ।୧୪।

କବି ସୂର୍ଯ୍ୟ କବିଚନ୍ଦ୍ର ଲୋ
ଫୁଲ ବଉଳ ବେଣୀ

କବିବର ଆଉ ସ୍ୱଭାବ କବି ଯେ
ରଚିଲେ ଅପୂର୍ବ ଛନ୍ଦ ଲୋ
ଫୁଲ ବଉଳ ବେଣୀ ।୧୫।

ଉପଇନ୍ଦ୍ରଭଞ୍ଜ କବିଲୋ
ଫୁଲ ବଉଳ ବେଣୀ
କବି ସମ୍ରାଟ ସେ ଲେଖିଗଲେ କେତେ
ଛାନ୍ଦ, ଚମ୍ପୁ ଚଉପଦି ଲୋ
ଫୁଲ ବଉଳ ବେଣୀ ।୧୬।

ଓଡ଼ିଆ ପାଇକ ବୀର ଲୋ
ଫୁଲ ବଉଳ ବେଣୀ
ଅପୂର୍ବ ସାହସ ରଣଭଙ୍ଗି ଦେଖି
ନଇଁଯାଏ ଆମ ଶିର ଲୋ
ଫୁଲ ବଉଳ ବେଣୀ ।୧୭।

ଉଠ ମୋ ଓଡ଼ିଆ ଭାଇ ଲୋ
ଫୁଲ ବଉଳ ବେଣୀ
ଜାତି ଗଉରବ ପୁରୁବ କୀରତି
ଫେରାଇ ଆଣିବା ପାଇଁ ଲୋ
ଫୁଲ ବଉଳ ବେଣୀ ।୧୮।

ଏ ଜାତି ମହାନ ହେଉ ଲୋ
ଫୁଲ ବଉଳ ବେଣୀ
ଜଗତର ନାଥ କାଳିଆ ସାଆନ୍ତ
ଆଶିଷ ବରଷି ଯାଉ ଲୋ
ଫୁଲ ବଉଳ ବେଣୀ ।୧୯।



# କାଳିଆ ଠାକୁର

ଜଗତର ନାଥ　　　କାଳିଆ ସାଆନ୍ତ
　　ନୀଳାଚଳ ଧାମେ ରହି,
ଜଗତ ପାଳୁଛ　　　ଭକତ ତାରୁଛ
　　ଦାରୁବ୍ରହ୍ମରୂପ ବହି ।୧।

ନାହିଁ ପାଦ ପାଣି　　　ସବୁ ମନ ଜାଣି
　　ପୂରାଉଛ ମନକାମ
କେତେ ପାପୀ ତପି　　　ଯାଉଛନ୍ତି ତରି
　　ସ୍ମରି ତୁମର ନାମ ।୨।

ତୁମେ ଦାରୁ ବ୍ରହ୍ମ　　　ତୁମେ ପରଂବ୍ରହ୍ମ
　　ତୁମେ ସ୍ଥିତି ତୁମେ ଲୟ
ତୁମେ ହର୍ତ୍ତାକର୍ତ୍ତା　　　ଦଇବ ବିଧାତା
　　ତୁମ ପଦେ ରହୁ ଲୟ ।୩।

କେତେ କେତେ ଭକ୍ତ　　　କେତେ ସାଧୁ ସନ୍ଥ
　　ଆସିଛନ୍ତି ତୁମ ପାଶେ
ତବ ଦରଶନ　　　ନାମ ସଂକୀର୍ତ୍ତନ
　　କରନ୍ତି ମୁକତି ଆଶେ ।୪।

ତୋର ନୀଳାଚଳେ　　　ଆସନ୍ତି ସକଳେ
　　ହିନ୍ଦୁ ଖ୍ରୀଷ୍ଟ ମୁସଲ୍‌ମାନ
ଭେଦାଭେଦ ନାହିଁ　　　ବଡ଼ସାନ ନାହିଁ
　　କରନ୍ତି ତୋଗୁଣଗାନ ।୫।

ବରଷକେ ଥରେ　　　ଆଷାଢ଼ ମାସରେ
　　ରଥେ ଆସ ଦୁଇ ଭାଇ
ପହଣ୍ଡି ପକାଇ　　　ଦାଣ୍ଡ ବୁଲୁକାଇ
　　ସବୁରି ଦର୍ଶନ ପାଇଁ ।୬।

ଦାସିଆ ବାଉରୀ          କରିଲା ଗୁହାରୀ
ନଡ଼ିଆ ଧରିଲା ଟେକି
ହାତ ବଢ଼ାଇଲ          ତା ନଡ଼ିଆ ନେଲ
ସଭିଏ ତାଟକା ଦେଖି ।୭।

ଭକ୍ତ ସାଲବେଗ          ହୋଇଲା ଆବେଗ
ରଥେ ଦରଶନ ପାଇଁ
ରଥ ରୁହାଇଲ          ଅପେକ୍ଷା କରିଲ
ରଥ ଯେ ଚାଲିଲା ନାହିଁ ।୮।

କାଞ୍ଚିର ରାଜନ          କଲା ଟାଣପଣ
ନ ମାନିଲା ଗଜପତି
ତା'ଟାଣ ଭାଙ୍ଗିଲ          ଯୁଦ୍ଧ ଆରମ୍ଭିଲ
ସାଜିଲ ଯେ ସେନାପତି ।୯।

ଶଙ୍କର ଆଚାର୍ଯ୍ୟ          ସନ୍ଥ ରାମାନୁଜ
ଶ୍ରୀ ଚୈତନ୍ୟ ଆଦି କେତେ
ଆସିଲେ ତୋ ପାଶେ          ଦରଶନ ଆସେ
ଥିଲେ ସାଧୁ ସନ୍ଥ ଯେତେ ।୧୦।

ପତିତପାବନ          କରଇ ଆହ୍ୱାନ
କେତେ ପାପୀ ତପି ଜନେ
ଲଭି ଦରଶନ          ହୋଇ ହୃଷ୍ଟ ମନ
ଲେଉଟିଲେ ନିଜ ସ୍ଥାନେ ।୧୧।

ଆନନ୍ଦ ବଜାରେ          ବୁଲିଣ ମଜାରେ
ସରବେ ଖାଆନ୍ତି ଅନ୍ନ
ଚଣ୍ଡାଳ ବ୍ରାହ୍ମଣ          ସରବେ ସମାନ
କେହି ନ ମଣନ୍ତି ଆନ ।୧୨।

ଓଡ଼ିଆ ଜାତିର     କାଳିଆ ଠାକୁର
ତୁମେ ଓଡ଼ିଆର ପ୍ରାଣ
ବରଷ ଆଶିଷ     କ୍ଷମ ଦୋଷା ଦୋଷ
ସର୍ବେଲଭୁ ପରିତ୍ରାଣ ।୧୩।

ଆଶିଷର ଧାରା     ଝରିପଡୁ ତ୍ୱରା
ଏ ଜାତି ମହାନ ହେଉ
ତୁମ ନାମ ଧ୍ୟାୟି     ତୁମ ଗୁଣ ଗାଇ
ଆମ ଏ ଜୀବନ ଯାଉ ।୧୪।

ତୁମରି ଆଶିଷେ     ତୁମରି ପରଶେ
ଏ ଜାତି ମହାନ ହେଉ
ପୂରବ ସାହସ     ପୁରୁବର ଯଶ
ଫେରାଇବା ଧ୍ୟେୟ ହେଉ ।୧୫।



# ଏ ଜାତି ମଉଡ଼ ମଣି

କିଏ କହେ ତୁମେ ଉତ୍କଳର ମଣି
ତୁମେ ତ ଜଗତ ମଣି
କୋଟିଏ ଲୋକରେ ଗୋଟିଏ ତୁମେତ
ଏ ଜାତି ମଉଡ଼ ମଣି ।୧।

ଏ ସାରା ଭୁବନେ ଦେଖିପାରେ ନାହିଁ
ତୁମ ପରି ଆଉ ଜଣେ
କେ ସିନା କହଇ ଲୋକଟିଏ ବୋଲି
ତୁମକୁ ଦେବତା ମଣେ ।୨।

ସେବାର ମୂରତି ତୁମପରି ଆଉ
ଦୁନିଆରେ ଅଛି କିଏ
ସ୍ନେହଁଭରା ତୁମ କଥା ପଦଟିଏ
ସବୁ ଦୁଃଖ ପୋଛି ଦିଏ ।୩।

ଦୟା ଧରମରେ ହୃଦୟ ପୁରିଛି
କା ଦୁଃଖ ନ ପାର ସହି
ମଣିଷ ଆଖିରୁ ଲୁହ ପୋଛି ଦିଅ
ସ୍ନେହଁ ବୋଳା କଥା କହି ।୪।

ସ୍ୱରାଜ୍ୟ ସାଧନ ପଥେ ଯେତେ ଗାଡ଼
ରହିଥିଲା ଦେଶ ସାରା
ତୁମ ମାଂସ ହାଡ଼େ ପୁରିଅଛି ସବୁ
ଝୁରୁଛି ତୁମକୁ କାରା ।୫।

ନମୋ ନିରଞ୍ଜନ ନିଖିଳ ନିଦାନ
ଶିଖାଇଲ ଧରମାକୁ
ବିଷ୍ଣୁମହାରଣା ମୁରୁଛିଲା ପୁଅ
ଶିଙ୍ଗୀକୂଳ ରଖିବାକୁ ।୬।

ଝୁରୁଛି ଚିଲିକା ଝୁରେ ବନଲତା
ଭୁଲି ନାହିଁ ବନ୍ଦୀଶାଳା
ବନ୍ଦୀ ଆତ୍ମକଥା ସେ କାରା କବିତା
ଏ ଜାତିର ଗଳା ମାଳା ।୭।

ବକୁଳ ବନର ମହକ ଯାଇନି
ସୁବାଷ ଜଗାଏ ପ୍ରାଣେ
କେତେ ଯେ ମଣିଷ ତିଆରି କରିଛ
କହିଦିଏ କାନେ କାନେ ।୮।

ତୁମ ହାତଗଢ଼ା ବକୁଳ ବନ ଯେ
ରହିଥିବ କାଳେ କାଳେ
କରପୁର ସିନା ଉଡ଼ି ଚାଲିଯାଏ
କନା କି ମହକ ଛାଡ଼େ ।୯।

ତୁମେ ଚାଲିଗଲ ଗଲେ ଲିଙ୍ଗରାଜ
ହରିହର କୃପାସିନ୍ଧୁ
ଶ୍ରୀ ଗୋଦାବରୀଶ ନୀଳକଣ୍ଠ ଦାଶ
ସଭିଏ ମଥାର ବିନ୍ଦୁ ।୧୦।

ଏ ଧରାଧାମରେ ଜନମ ଲଭିଲେ
ମରଣ ନିଶ୍ଚୟ ଆସେ
ସେ ନିୟମେ ତୁମେ ଚାଲିଗଲ ଏଠୁ
ପରମ ଆତ୍ମାଙ୍କ ପାଶେ ।୧୧।

ଏ ଜାତି ତୁମକୁ ଭୁଲିପାରି ନାହିଁ
ଭୁଲିବି ପାରିବ ନାହିଁ
ଏ ଜାତି ଜୀବନ ଜାତିଗଉରବ
ଭୁଲିକେ ପାରିବ କାହିଁ ।୧୨।

ରହିଥିବ ତୁମେ ଚିର ଭାସ୍ୱର
ପ୍ରତି ମଣିଷର ମନେ
ଦୀପ ଶିଖା ହୋଇ ଦେଖାଇବ ବାଟ
କୋଟି କୋଟି ଜନଗଣେ ।୧୩।

ତୁମେ ଗଲ ଚାଲି ଲାଗେ ଖାଲି ଖାଲି
ଆଉକେ ହୋଇବ ସାହା
ବନ୍ୟା ମରୁଡ଼ି ବିପଦ ବେଳାରେ
କେ କହିବ ଆଉ ଆହା ।୧୪।

ସରଗୁ ବରଷ ଆଶିଷର ଧାରା
ଏ ଜାତି ମହାନ ହେଉ
ତୁମରି ଆଶିଷ ତୁମ ପୁଣ୍ୟବାଣୀ
ସଭିଙ୍କୁ ପ୍ରେରଣା ଦେଉ ।୧୫।



# ମଧୁବାବୁ

ଜାତି ପ୍ରେମ ବହ୍ନି ଜାଳିଦେଲ ତୁମେ
ସ୍ୱାର୍ଥକୁ ଆହୁତି ଦେଲ
ସ୍ୱାର୍ଥ ମେଧ ଯଜ୍ଞେ ନିଜକୁ ମିଶାଇ
ଦରିଦ୍ରତା କରିନେଲ ।୧।

ଉଠାଇଲ ତୁମେ ଓଡ଼ିଆ ଜାତିକୁ
ପୁରୁବ ଗାଥା ଚେତାଇ
ଦେଶ ଜାତି ପାଇଁ କାମ କରି କରି
ଜୀବନ ଦେଲ ବିତାଇ ।୨।

ସ୍ୱାଭିମାନ ଭରା ବଚନ ତୁମର
ଏ ଜାତିର କାନେ କାନେ
ବାଜୁଛି ଏବେବି ପ୍ରତି ପ୍ରାଣେ ପ୍ରାଣେ
ନବ ଜାଗରଣ ଆଣେ ।୩।

ଜାତି ନନ୍ଦିଘୋଷ ଚାଲିବନି କେବେ
ସ୍ୱାର୍ଥଟି ସାରଥୀ ହେଲେ
କହିଥିଲ ତୁମେ ପ୍ରତି କାନେ କାନେ
ପବନେ ଲହରୀ ଖେଳେ ।୪।

ଓଡ଼ିଆ ଜାତିର ସ୍ୱତନ୍ତ୍ରତା ଲାଗି
ଲଢ଼ିଲ ସାରା ଜୀବନ
ଜାତି ଗଉରବ ରଖିବା ପାଇଁକି
କରିଲ ଜୀବନ ପଣ ।୫।

ଜନମ ଭୂଇଁର ଉପକାର ପାଇଁ
ସବୁ ନିଉଛାଳି ଦେଲ

ସବୁ ନିନ୍ଦା ଆଉ ସବୁ ଅପମାନ
ମଥାପାତି ସହି ନେଲ ।୬।

ମନ ବଳ ଆଗେ ଦରିଦ୍ରତା ତୁମ
ବାଧା ଦେଇ ନ ପାରିଲା
ଓଡ଼ିଆ ମାଟିର ପ୍ରଥମ ସ୍ନାତକ
ରୂପେ ନାମ ବାହାରିଲା ।୭।

ପ୍ରଥମରେ ଏମ୍.ଏ. ପ୍ରଥମେ ଓକିଲ
ପ୍ରଥମେ ବିଲାତ ଗଲ
ବାରିଷ୍ଟର ହୋଇ ଫେରି ଆସି ତୁମେ
ଦେଶ ପାଇଁ କାମ କଲ ।୮।

ବିଛିନ୍ନ ଓଡ଼ିଆ ଅଞ୍ଚଳ ମିଶ୍ରଣେ
ଲାଗିଗଲ ପ୍ରାଣ ପଣେ
ଓଡ଼ିଆ ଜାତିର ମାନ ରଖିବାକୁ
ତୁମପରି ନାହିଁ ଜଣେ ।୯।

ଉତ୍କଳ ସଭା ଗଢ଼ିଲ ପ୍ରଥମେ
ସମ୍ମିଳନୀ କଲ ପରେ
ବିଛିନ୍ନ ଓଡ଼ିଶା ମିଶ୍ରଣ ପାଇଁକି
କହିଗଲ ଘରେ ଘରେ ।୧୦।

ତୁମ ତ୍ୟାଗ ନିଷ୍ଠା ପ୍ରଚେଷ୍ଟା ବଳରେ
ସ୍ୱତନ୍ତ୍ର ଓଡ଼ିଶା ହେଲା
ପ୍ରତି ଓଡ଼ିଆର ହୃଦେ ମନେ ପ୍ରାଣେ
ସ୍ୱାଭିମାନ ଭରି ଦେଲା ।୧୧।

କହିଥିଲ ତୁମେ -
"ଉଠରେ ଉଠରେ ଉତ୍କଳ ସନ୍ତାନେ
ଶୋଇଥିବୁ କେତେ ଦିନେ

ପୁରୁବ ଗୌରବ ପୁରୁବ କାହାଣୀ
ପଡୁନାହିଁ ତୋର ମନେ ?'' ।୧୨।

ତଥାପି ଶୋଇଛି ଏ ଓଡ଼ିଆ ଜାତି
ଏବେବି ଉଠଇ ନାହିଁ
ତୁମରି ଆହ୍ୱାନ ତୁମ ମହାବାଣୀ
ତା'କାନେ ପଡ଼ିବ କାହିଁ ।୧୩।

ତୋଷାମୋଦ କରି ସ୍ୱଜାତିର ମାନ
ବଢ଼ାଇ ନ ପାରେ କେହି
କହିଥିଲ ତୁମେ ଏବେ ଦେଖିଯାଅ
କି କରେ ଏ ଜାତି ଭାଇ ।୧୪।

ତୋଷାମୋଦ କରି ସ୍ୱାର୍ଥେଛନ୍ଦି ହୋଇ
ଦେଶ ସ୍ୱାର୍ଥ ବଳି ଦେଇ
ଏ ଦେଶର ନେତା ହାତେ ହାତ ଦେଇ
ନାଚୁଛନ୍ତି ଥେଇଥେଇ ।୧୫।

ସରଗରେ ଥାଇ ନିଶ୍ଚେ ଶୁଣୁଥିବ
ଆମ ଏ ନେତାଙ୍କ କଥା
ସବୁ ଦେଖି ଶୁଣି ପାଉଥିବ ନିଶ୍ଚେ
ହୃଦୟେ ଦାରୁଣ ବଥା ।୧୬।

ଧନେ ଧାନ୍ୟେ ଭରା ଏ ଉତ୍କଳ ଭୁଇଁ
ସବୁଠୁ ବେଶୀ ଗରିବ
ତୁମପରି ଆଉ ଲୋକଟିଏ କାହିଁ
ଉତ୍କଳ ପାଇଁ ଲଢ଼ିବ ।୧୭।

ଉତ୍କଳ ଗୌରବ କୁଳବୃଦ୍ଧତୁମେ
ମଧୁ ବାରିଷ୍ଟର ନାମେ

ଅରଜିଲ ନାମ କରିଗଲ କାମ
ଅମର ଏ ଧରାଧାମେ ।୧୮।

ତୁମରି ଆଶିଷ ଝରିପଡୁ ସଦା
ଏ ଦେଶ ବାସୀଙ୍କ ପରେ
ନବ ଜାଗରଣ ଭରି ଦେଉ ପ୍ରାଣେ
ଜାଗନ୍ତୁ ସରବେ ଥରେ ।୧୯।

ହସିଉଠୁ ପୁଣି ଏ ଉତ୍କଳ ଭୂଇଁ
ତୁମରି ଆଶିଷ ପାଇ
ସତ୍ୟନ୍ୟାୟ ପଥେ ଚାଲନ୍ତୁ ସରବେ
ବିଭୁନାମ ଗାଇଗାଇ ।୨୦।



# ସହିଦ ବାଜି ରାଉତ

ଘୋଟି ଆସୁଅଛି ଅନ୍ଧାର
ଘୋର ବରଷା ବଢ଼ି
ବିଜୁଳି ଚମକେ ଚୌଦିଗେ
ମାଡ଼ିଆସଇ ଝଡ଼ି ।୧।

ଗରଜୁଛି ମେଘ ସଜୋରେ
ଧରା ବୁକୁ ଫଟାଇ
ଘୋର ଅନ୍ଧକାରେ ବିଜୁଳି
ନିଏ ବାଟ କଢ଼ାଇ ।୨।

ସାଇଁ ସାଇଁ ହୋଇ ପବନ
ବହେ ଉତ୍ତର ଦିଗୁ
ଦୁଲୁକି ଉଠଇ ଶରୀର
ସତେ ଫାଟିବ ବୁକୁ ।୩।

ବ୍ରାହ୍ମଣୀର ଛାତି ଉଚ୍ଛୁଳେ
ମାଡ଼ି ଆସଇ ପାଣି
ଘେରି ରହିଅଛି ଅନ୍ଧାର
କିଛି ନ ହୁଏ ଜାଣି ।୪।

ପରଜା ମଣ୍ଡଳ ଦେଇଛି
ଡାକ ଉଠରେ ଭାଇ
ଢେଙ୍କାନାଳ ରାଜ୍ୟେ ଅନ୍ୟାୟ
ଆଉ ସହିବା ନାହିଁ ।୫।

ବିପ୍ଳବର ନିଆଁ ଜଳୁଛି
ଆଜି ରାଇଜ ସାରା
ଅଗଣିତ ଦେଶ ବାସୀଏ
ନିତି ଲଭନ୍ତି କାରା ।୬।

ଖବର ଯାଇଛି ଗଡ଼କୁ
ସୈନ୍ୟ ଆସିବା ପାଇଁ
ବନ୍ଧୁକ ମୁନରେ ବିପ୍ଳବ
ପରାଦେବେ ଦବାଇ ।୭।

ଫିରିଙ୍ଗି ଫଉଜ ଆସିବେ
ହାତେ ବନ୍ଧୁକ ଧରି
କେତେ ଯେ ନିରୀହ ଜୀବନ
ଯିବ ଅକାଳେ ଝଡ଼ି ।୮।

ଫିରିଙ୍ଗି ଫଉଜ ଆସିଲେ
ବାଟ ଛାଡ଼ିବା ନାହିଁ
ବ୍ରାହ୍ମଣୀ ନଈର ଘାଟରେ
ଡଙ୍ଗା ଫିଟିବ ନାହିଁ ।୯।

ଘାଟ କୂଳେ କିଏ ଜଗିବ
ପଡ଼ିଅଛି ଭାଳେଣି
ସିଂହ ଶିଶୁ ସମ ବାଜିଆ
କହେ 'ଚିନ୍ତା କରନି' ।୧୦।

ନଈ କୂଳେ ଜଗି ବସିବି
ଜଗିବି ମୁଁ ଘାଟକୁ
ଫିରିଙ୍ଗି ଫଉଜ ଆସିଲେ
ନ ଛାଡ଼ିବି ବାଟକୁ ।୧୧।

ଆସୁ ଝଡ଼ବର୍ଷା ବିଜୁଳି
ମୋର ଖାତର ନାହିଁ
କରିଅଛି ପଣ ଜୀବନ
ଦେଶ ଜାତିର ପାଇଁ ।୧୨।

ଗୁଳି ଗୋଳା ତୋପ ବନ୍ଧୁକେ
ତିଳେ ନାହିଁ ମୋ ଡ଼ର
ଦେଶ ଜାତି ମାନ ପାଇଁକି
କା'ରେ ନାହିଁ ଖାତର ।୧୩।

ଆସିଲେ ଫିରିଙ୍ଗି ଫଉଜ
ବାଜି ଜଗିଛି ନାଆ
ଡାକିଲେ ଅଛିକେ ସେକୂଳେ
ବେଗେ ଏକୂଳେ ଆ' ।୧୪।

ସିଂହ ଶିଶୁ ଦେଲା ଉତ୍ତର
ବଜ୍ର ଗମ୍ଭୀର ସ୍ୱରେ
ପରଜା ମଣ୍ଡଳ କହିଛି
ଯିବି ନାହିଁ ସେ ପାରେ ।୧୫।

ଗରଜି ଉଠିଲା ବନ୍ଧୁକ
ନଦୀ ବକ୍ଷ ଫଟାଇ
ଗରବ ରଖିଲା ବାଜିଆ
ଦେଲା ଛାତି ପତାଇ ।୧୬।

ଟଳି ପଡ଼ିଲା ସେ ନାଆରେ
ବକ୍ଷୁ ରକତ ଦେଲା
ସେ ରକତ ଧାରେ ବ୍ରାହ୍ମଣୀ
ଜଳ ନାଲିଆ ହେଲା ।୧୭।

ସେ ନାଲିଆ ଜଳ ମିଶିଲା
ଯାଇ ସପ୍ତ ସାଗରେ
ସତେ ଅବା ଲାଲ ହୋଇଲା
ବାଜିଆର ରକ୍ତରେ ।୧୮।

ନୁହଁଇ ସାମାନ୍ୟ ରକତ
କେବେ ନହେବ ଫିକା
ସବୁରି କପାଳେ ଲେଖିଲା
ତା'ର ବିଜୟ ଟୀକା ।୧୯।

କେତେ ଅମାନିଆ ପିଲାଟା
କଥା ମାନିଲା ନାହିଁ
ଫିରିଙ୍ଗି ଫଉଜ ଆଗରେ
ଦେଲା ଛାତି ପତାଇ ।୨୦।

ଧନ୍ୟ ଲୋ ଉତ୍କଳ ଜନନୀ
ଧନ୍ୟ ବାଜିଆ ପାଇଁ
ଗରବ ରଖିଲା ତୋହର
ପୁଅ ତା'ପରି କାହିଁ ।୨୧।

ଜନମ ଲଭନ୍ତୁ ଜଠରେ
ତୋର ବାଜିଆ ଶତ
ଦେଶ ଜାତି ପାଇ ଦିଅନ୍ତୁ
ନିଜ ଛାତି ରକତ ।୨୨।

ରଖନ୍ତୁ ତୋ ନାମ ଧରାରେ
କରି ମହତ କାମ
ବିକଶିତ ହେଉ ମହୀରେ
ସଦା ଉତ୍କଳ ନାମ ।୨୩।



# ଲକ୍ଷ୍ମଣ ନାୟକ

ଦେଖିନାହିଁ ଛବି ତୁମ
ଦେଖିନି ରୂପକୁ
ଭଲକରି ଚିହ୍ନି ନାହିଁ
ଏ ଜାତି ତୁମକୁ ।୧।

ଜାଣିନି ପଢ଼ିଛ ଅବା
ପଢ଼ିନାହଁ ପାଠ
ଥିଲେ ଅବା ହୋଇଥିବ
ଚାହାଳୀର ଚାଟ ।୨।

ଶୁଣିଅଛି କେହି ଜଣେ
ଲକ୍ଷ୍ମଣ ନାୟକ
ହସି ହସି ଫାଶୀ ଖୁଣ୍ଟେ
ଝୁଲାଇଲା ବେକ ।୩।

ସୁଦୂର କୋରାପୁଟର
ଅଖ୍ୟାତ ପଲ୍ଲୀରେ
ରହୁଥିଲ ତୁମେ, କେବେ
ରହିନା ଦିଲ୍ଲୀରେ ।୪।

ନୂଆ ରାଜଧାନୀ ଅବା
କଟକ ଦେଖିନା
ଆଧୁନିକ ସମାଜର
ସୁଆଦ ଚାଖିନା ।୫।

ବିଦ୍ୟାଳୟ ଦୁଆରକୁ
ଯାଇନା ଜୀବନେ
ମହାବିଦ୍ୟାଳୟ କଥା
ଭାବିନା ସପନେ ।୬।

କିପରି ଜାଗିଲା କହ
ମନେ ସ୍ୱାଭିମାନ
କିପରି କରିଲ ଜନନୀର
ଜୟ ଗାନ ।୭।

ଜାତିର ପତାକା ଉର୍ଦ୍ଧ୍ୱେ
ଉଡ଼ାଇବା ପାଇଁ
ଫିରିଙ୍ଗିର ଗୁଳି ଗୋଳା
ନ ମାନିଲ କାହିଁ ।୮।

ଉଡ଼ିଲା ପତାକା ଉର୍ଦ୍ଧ୍ୱେ
ହୋଇ ଫରଫର
ଆନ୍ଦୋଳନ ରଥ ଚକ
ଚାଲେ ଘରଘର ।୯।

ମିଥ୍ୟା ଅପରାଧେ ନେଲେ
ତୁମ୍ଭକୁ ହେ ଧରି
ପକ୍ଷପାତ ବିଚାରରେ
ଦେଲେ ଦୋଷୀ କରି ।୧୦।

ଝୁଲାଇଲେ ଫାଶୀଖୁଣ୍ଟେ
ଅସୁରର ଦଳ
ଯେଣୁ ତାଙ୍କ ହାତେ ଥିଲା
ଶାସନର କଳ ।୧୧।

ଦେଶ ମାତୃକାର ପାଇଁ
ଶହୀଦ ହୋଇଲ
ସବୁରି ହୃଦୟେ ସଦା
ଅମର ରହିଲ ।୧୨।

●

# ଜୟୀ ରାଜଗୁରୁ

ତଥାପି ଚିହ୍ନିଲା ନାହିଁ ତୁମକୁ ଏ ଜାତି
ବୃଥା ବାହ୍ୟ ଆଡ଼ମ୍ବରେ ଯାଇଛି ସେ ମାତି
ଏ ଜାତି ଦଧିଚିତୁମେ ଏ ଜାତି ଗରବ
ଫିରିଙ୍ଗିର ଅହଂକାର କରିଛ ଖରବ
ତୁମେ ହେ ଅଜେୟ
ଏ ଜାତିର ଧେୟ ।୧।

ଜିତି ପାରିନାହିଁ କାଳ ତୁମେ ମହାକାଳ
ବାନ୍ଧି ପାରିନି ତୁମକୁ ଫିରିଙ୍ଗର ଜାଲ
ଗରବ ରଖିଛ ତୁମେ ଓଡ଼ିଆ ଜାତିର
ନିରିମମ ମରଣକୁ କରିନା ଖାତିର
ଚିର ସ୍ମରଣୀୟ
ଚିର ବରଣୀୟ ।୨।

ମୃତ୍ୟୁଞ୍ଜୟ ତୁମେ, ମୃତ୍ୟୁକୁ ଡରିନା
ଧନଞ୍ଜୟ ତୁମେ, ଉତ୍କଳେ ଭୁଲିନା
ଦମ୍ଭ ରଖିଅଛ ତୁମେ ଏ ମାଟି ମାଆର
ପ୍ରଲୋଭନେ ଧମକରେ ଡରିନା କାହାର
ଚିର ବନ୍ଦନୀୟ
ଅଭିନନ୍ଦନୀୟ ।୩।

ଓଡ଼ିଆ ରାଜାର ତୁମେ ଥିଲ ରାଜଗୁରୁ
ଏ ଜାତି ପ୍ରଣାମ କରେ ଦୂରୁ ବହୁ ଦୂରୁ
ତୁମେ ହେ ମଉଡ଼ମଣି ଏ ଜାତି ମଥାରେ
ତୁମ ଗାଥା କେ ବର୍ଣ୍ଣିବ ମୁହଁରେ କଥାରେ
ତୁମ ସ୍ୱାଭିମାନ
ନ ହୋଇବ ମ୍ଳାନ ।୪।

ହସି ହସି ବରିନେଲ ସବୁ ନିର୍ଯ୍ୟାତନା
କହିବାକୁ ଗୁପ୍ତତଥ୍ୟ କହିଦେଲ ମନା
ରାକ୍ଷଶ ଫିରିଙ୍ଗି ମନେ ପଶୁଉଠେ ଜାଗି
ଗର୍ଜିଲା ପାଗଳ ପ୍ରାୟ ଦଣ୍ଡ ଦେବା ଲାଗି
ଝିଙ୍କି ବରଡାଳ
କଲା ଦୁଇଫାଳ ।୫।

ସେ କଥା ପଢ଼ିଲେ ମନେ ଦେହ ଉଠେ ଥରି
ଦେହେ ମନେ ପ୍ରାଣେ ଖାଲି କ୍ରୋଧ ଯାଏ ଭରି
କି କଲ କି କଲ ଆରେ ଅସୁରର ଦଳ
ଏତେ ବଡ଼ ଦେଶ ଭକ୍ତେ ଏ ବିଚାର କଲ
ନାହିଁ କି ବିବେକ
ଅବିବେକ ।୬।

ଏ ଜାତି ଗରବ କରେ ତୁମ ଲାଗି ଆଜି
ଏ ଜାତି ଦୁଃଖରେ ଝୁରେ ହେଜି ସ୍ମୃତି ରାଜି
ତୁମପରି ଯୋଗ୍ୟ ପୁଅ ଉତ୍କଳ ମାଆର
ସତେ ପୁଣି ଜନମିବ ଜଠରୁ ତାହାର
ନୀରବରେ ଖାଲି
ଦେଉ ଅଶ୍ରୁ ଢାଳି ।୭।

ତୁମେ ସିନା ଚାଲିଗଲ ଏ ଧରାଧାମରୁ
ନ ପାରିବୁ ପୋଛି କେବେ ତୁମକୁ ମନରୁ
ତୁମେ ରାଜଗୁରୁ ତୁମେ ଅଟ କାଳଜୟୀ
ସବୁରି ହୃଦୟେ ସଦା ଥିବ ତୁମେ ରହି
ଆହେ ମହାମତି
ଘେନ ହେ ପ୍ରଣତି ।୮।



# ବୀର ସୁରେନ୍ଦ୍ର ସାଏ

ସମ୍ବଲପୁର ବୀର ନୁହେଁ ଖାଲି
ସାରା ରାଇଜର ମଉଡ଼ମଣି
ଉତ୍କଳ ନୁହେଁ ଭାରତ ମାତାର
ଯୋଗ୍ୟପୁଅ ରୂପେ ତୁମକୁ ଗଣି ।୧।

ରାଜା ପୁଅ ହୋଇ ଜନମ ଲଭିଲ
ସିଂହାସନେ ଦିନେ ବସିଲ ନାହିଁ
ସ୍ୱାଭିମାନ ଭରା ହୃଦୟତୁମର
ତୁମପରି ଜଣେ କେ ଅଛି କାହିଁ ।୨।

ନାଯ୍ୟ ଦାବୀ ପାଇଁ ଲଢ଼େଇ କରିଲ
ନ ମାନିଲ କିଛି ବାଧା ବନ୍ଧନ
ସ୍ୱାଧୀନତା ଯୁଦ୍ଧେ ଝାସ ଦେଲ ତୁମେ
ସବୁରି ମନରେ ଦେଲ ଇନ୍ଧନ ।୩।

ସମ୍ବଲପୁର ଝୁରୁଛି ତୁମକୁ
ଝୁରୁଛି ତୁମକୁ ଗଛ ପତର
ସବୁରି କାନରେ ଫୁଙ୍କି ଦେଇଗଲ
ମହାନ୍ ସ୍ୱାଭିମାନ ମନ୍ତର ।୪।

ଉତ୍କଳ ଜନନୀ ସତେକି ପାଇବ
ତୁମପରି ବୀର ପୁତ୍ର କି ହାଏ
ପ୍ରଣାମ କରୁଛୁ କୁନିକୁନି ହାତେ
ତୁମକୁ ହେବୀର ସୁରେନ୍ଦ୍ର ସାଏ ।୫।

●

# ବକ୍ସି ଜଗବନ୍ଧୁ

ବକ୍ସି ହେ ତୁମେ କାହିଁଗଲ
ଓଡ଼ିଶା ରାଇଜ ଖୋଜୁଛି ତୁମକୁ
ବିକଳରେ ହୋଇ କଲବଲ

ଖୋଜୁଛି ତୁମକୁ ବରୁଣେଇ ଗିରି
ତୁମବିନା ସବୁ ଦିଶେ ହତଶିରି
ଖୋରଧାର ମାଟି କାନ୍ଦେ ଝୁରି ଝୁରି
ଆଖିରୁ ଲୋତକ ଝରଇ ସବୁରି
ସତେ କି ସଭିଙ୍କୁ ଭୁଲିଗଲ
ବକ୍ସି ହେ ତୁମେ କାହିଁ ଗଲ ।

ପାଇକ ବିଦ୍ରୋହେ ନାୟକ ସାଜିଲ
ଇଂରେଜର ଦମ୍ଭ ଗାରିମା ଭାଜିଲ
ଦେଶପ୍ରେମ ମନ୍ତ୍ର କାନରେ ଫୁଙ୍କିଲ
ତୁମ ଚଲା ପଥୁ କେବେ ନ ହୁଙ୍କିଲ
କହିଲ ସଭିଙ୍କୁ ଆଗେ ଚଲ୍ ଭାଇ ଆଗେ ଚଲ୍
ବକ୍ସି ହେ ତୁମେ କାହିଁ ଗଲ ।

ଇଂରେଜ ତୁମକୁ ଧରି ନ ପାରିଲା
ତୁମ ବୁଦ୍ଧି ଆଗେ ହାର୍ ସେ ମାନିଲା
ଯେତେ ଯେତେ ଦୁଷ୍ଟ ବୁଦ୍ଧି ସେ ଖଞ୍ଜିଲା
ତୁମ ବୁଦ୍ଧି ଆମେ ତା ବୁଦ୍ଧି ହଜିଲା
ଲକ୍ଷ୍ୟରୁ ନ ହେଲେ ହଲଚଲ
ବକ୍ସି ହେ ସବୁ ଭୁଲିଗଲ ।

ତୁମ ବୀରତ୍ୱର ପଟାନ୍ତର ନାହିଁ
ତୁମ ବିନା ଆମେ ହେଉ ହାଇ ପାଇଁ

ଉତ୍କଳ ଜନନୀ କାନ୍ଦୁଛି ତୁହାଇ
ନୀରବେ ଆଖିରୁ ଲୋତକ ବୁହାଇ
ସବୁ ଦେଖି ତୁମେ କିପରି ନୀରବେ ରହିଗଲ
ବକ୍ସି ହେ ତୁମେ କାହିଁଗଲ ।

ଆସ ଆସ ବେଗେ ସରଗୁ ଓହ୍ଲାଇ
ଏ ଜାତି ଛାତିକୁ ଦିଅ ଦୋହଲାଇ
ଜାତି ପ୍ରେମ ବହ୍ନି ଦିଅ ହେ ଜଳାଇ
କଠିନ ହୃଦୟ ଦିଅ ତରଳାଇ
ଉତ୍କଳ ହେଉ ଉର୍ଜସ୍ୱନ
ବକ୍ସି ହେ ତୁମେ କାହିଁଗଲ



## ରାଣୀ ଶୁକଦେଈ

ବାଙ୍କିର ରାଜନ ଡାକରା ଦେଇଛି
ଉଠରେ ପାଇକ ଗଣ
ଖୋରଧାର ରାଜା ସମର ସାଜିଛି
କରିବାକୁ ହେବ ରଣ ।୧।

ଘନ ଘନ ବୀର କାହାଳି ବାଜିଲା
ବାଜିଲା ସମର ବାଜା ।
ବୀରୋନ୍ମାଦେ ମାତି ଉଠିଲେ ସକଳେ
ରକତ ହୋଇଲା ତାଜା ।୨।

ବାଙ୍କିର ସୀମାନ୍ତ ରଗଡ଼ି ଗ୍ରାମଟି
ପାଲଟିଲା ଯୁଦ୍ଧ କ୍ଷେତ୍ର
ଦୁଇ ରାଜାଙ୍କର ରଣ ଦେଖିଦେଖି
ଖୋସି ହୋଇଗଲା ନେତ୍ର ।୩।

ଖୋରଧା ରାଇଜ ସୈନ୍ୟ ବଳ ଆଗେ
ବାଙ୍କି ନ ପାରିଲା ଚଳି
ବାଙ୍କିର ସଇନ ଛତ୍ରଭଙ୍ଗ ଦେଲେ
ରାଜନ ପଡ଼ିଲେ ଟଳି ।୪।

ବାଙ୍କି ଗଡ଼େ ଯାଇ ଦୂତ ପହଞ୍ଚିଲା
ଜଣାଇଲା ଦୁଃଖ କଥା
କ୍ରନ୍ଦନ ରୋଳେ ଉଛୁଳିଲା ଗଡ଼
କୋଡ଼ିହେଲେ ସର୍ବେ ମଥା ।୫।

କ୍ଷତ୍ରୀୟ ରମଣୀ ବାଙ୍କି ପାଟରାଣୀ
ନୀରବେ ରହିଲେ ଚାହିଁ

କୋହ ସମ୍ଭାଳିଲେ ମନରେ ଭାବିଲେ
ପଥ କାହିଁ ପଥ କାହିଁ ।୬।

ରାଣୀ ଶୁକଦେଇ ବୀରା ରମଣୀ ସେ
ଡାକ ଦେଲେ ସାଜସାଜ
ପ୍ରତିଶୋଧ ନେବି ପତିହନ୍ତାଠାରେ
ରଣ ଭୂମେ ମୁହିଁ ଆଜ ।୭।

ସତେ କି ଜାଗିଲା ଶତ ସିଂହ ବଳ
ବାଙ୍କିର ପାଇକ ମନେ
ସମର ଢକ୍‌କା ବଜାଇ ସରବେ
ଝାସ ଦେଲେ ଘୋର ରଣେ ।୮।

କଳା ପଥରରେ ଲାଗିଲା ସମର
ଦେଖିଲେ ମାଡ଼ିବ ଡ଼ର
ବେଳୁ ବେଳ ଯୁଦ୍ଧ ଭୀଷଣ ହୋଇଲା
ଭୀଷଣୁ ଭୀଷଣ ତର ।୯।

ବଡ଼ମ୍ବା ସଇନ ଯୋଗ ଦେଲେ ଆସି
ଦ୍ୱିଗୁଣିତ ହେଲା ବାଙ୍କିର ବଳ
ଖୋରଧା ପାଇକ ପରାଜିତ ହେଲେ
ଛତ୍ରଭଙ୍ଗ ଦେଲେ ଦଳକୁ ଦଳ ।୧୦।

ବନ୍ଦୀ ହୋଇଲେ ଖୋରଧା ରାଜନ
ନତମସ୍ତକରେ ହୋଇଲେ ଠିଆ
ପ୍ରାଣ ଦଣ୍ଡପାଇଁ ନ ବଳିଲା ମନ
ଥରିଲା ହାତଟି କମ୍ପିଲା ହିଆ ।୧୧।

ନିଜେ ଭୋଗୁଛନ୍ତି ବୈଧବ୍ୟ ଯନ୍ତ୍ରଣା
କିମ୍ପାଇ ଭୋଗିବେ ଖୋରଧା ରାଣୀ
ନାରୀ ହୋଇ ନାରୀ ହୃଦୟର ବ୍ୟଥା
ସତେ ଦେଲା ତାଙ୍କ ହୃଦୟ ହାଣି ।୧୨।

ନୟନୁ ବୁହାଇ ଲୋତକର ଧାରା
ନିଜ ସଇନଙ୍କୁ ଆଦେଶ ଦେଲେ
ଖୋରଧା ରାଜାଙ୍କୁ ମୁକ୍ତ କରିଦିଅ
ତା ଶୁଣି ସଭିଏ ଚକିତ ହେଲେ ।୧୩।

କୁଶପଲ୍ଲୀ ଗ୍ରାମ ବାଙ୍କି ହସ୍ତେ ଦେଇ
ସନ୍ଧିକଲେ ବେଗେ ଖୋରଧା ରାଜା
ଦୁଃଖଦ ଅତୀତ ଭୁଲିଯାଇ ସର୍ବେ
ବଜାଇଲେ ବେଗେ ବନ୍ଧୁତା ବାଜା ।୧୪।

ଝାନ୍‌ସୀର ରାଣୀ ଲକ୍ଷ୍ମୀବାଇ ଠାରୁ
କେଉଁଗୁଣେ ଊଣା ବାଙ୍କିର ରାଣୀ
ଶୁକଦେଇ ତୁମେ କହିଗଲ କାନେ
ସ୍ୱାଭିମାନ ଆଉ ବୀରତ୍ୱ ବାଣୀ ।୧୫।



# ରଘୁ ଦିବାକର

ଊଣେଇଶ ଶହ ଏକଚାଳିଶ ମସୀହା
ଅପ୍ରେଲ ମାସର ତାରିଖ ଚାରି
ମୃତ୍ୟୁ ତୁମକୁ ରଘୁ ଦିବାକର ନେଇଥିଲା କୋଳେ
ତଥାପି ଜୀବନେ ଯାଇନା ହାରି ।

ଉଠାଇଲ ସ୍ୱର ଶାସନ ବିରୁଦ୍ଧେ
ପ୍ରଜା ଆନ୍ଦୋଳନ ଗଢ଼ିଲ ଟୋଳି
ହଟିଯାଅ ତୁମେ ଅତ୍ୟାଚାରୀ ଦଳ
ଡାକ ଦେଲ ତୁମେ ଅନ୍ତର ଖୋଲି
ସଦର୍ପେ କହିଲ ଡରିବୁନି କେବେ
ମାର୍‌ତୁ ଯେତେ ମାରିବୁ ଗୁଳି
ଅଗ୍ନି ବରଷିଲା ତୁମରି କଥାରେ
ଗାଏଁ ଗାଏଁ ତୁମେ କହିଲ ବୁଲି ।

ନ ଚଳିବ ଆଉ ବେଠି ଓ ବେଗାରୀ
ନ ଦେବୁ ତୁମକୁ ଅନ୍ୟାୟ କର
କଷଣ ଶୋଷଣ ନ ଚଳିବ ଆଉ
ବୁଲି କହିଗଲ ଘରକୁ ଘର ।

ବିଜୁଳି ବେଗରେ ଖେଳିଗଲା କଥା
ରଣପୁର ବାସୀ ଉଠିଲେ ଚେଇଁ
ନୂତନ ଉନ୍ମାଦେ ଉଠିଲେ ସେ ମାତି
ଆନ୍ଦୋଳନେ ସର୍ବେ ପଡ଼ିଲେ ଡେଇଁ ।

ଚମକି ଉଠିଲେ ରାଜା କୃଷ୍ଣଚନ୍ଦ୍ର
ବେଜେଲ୍ ଗେଟ୍‌କୁ ଦେଲେ ଡକାଇ

ଲୋଧାଚୁଆ ଠାରେ ଓଗାଳିଲେ ପଥ
ମିଳି ମିଶି କାଠ ଗଡ଼ ପକାଇ ।

କ୍ରୋଧିତ ବେଜେଲ୍ ଚଳାଇଲେ ଗୁଳି
ଆହତ ହୋଇଲେ ଭୋବନି ପୃଷ୍ଟି
ରଘୁ ଦିବାକର ଡକାଇଲେ ସଭା
ବେଜେଲ ଉପରେ ରଖିଲେ ଦୃଷ୍ଟି ।

ଅର୍ଜୁନ ରାଉତ ହୋଇଲେ ନିହତ
ବେଜେଲଙ୍କ ଗୁଳି ଚୋଟେ
ରକ୍ତ ଜରଜର ତାଙ୍କରି ଶରୀର
ଧରଣୀ ଉପରେ ଲୋଟେ ।

ଚିହିଙ୍କି ଉଠିଲେ ରଣପୁରବାସୀ
ଚାଳରୁ ବାଉଁଶ ଟାଣି
ପିଟି ମାରି ଦେଲେ ବେଜେଲ୍‌ଗେଟ୍‌ଙ୍କୁ
ଯେ ଯାହା ପାରିଲା ଆଣି ।

ଆରମ୍ଭ ହୋଇଲା ଦମନର ଲୀଳା
ବହିଲା ରକତ ଧାର
ଗରଜି ଉଠିଲେ ଇଂରେଜ ଫଉଜ
ପରୁଆ ନ ରଖିଲେ କା'ର ।

ଶେଷେ ଧରା ହେଲେ ରଘୁ ଦିବାକର
ଚାଲିଲା ବିଚାର ଖେଳ
ଫାଶୀ ଦଣ୍ଡ ଶେଷେ ମିଳିଲା ଦୁହିଁଙ୍କୁ
ପାଖେଇଲା ଶେଷ ବେଳ ।

ହସି ହସି ଫାଶୀ ଖୁଣ୍ଟରେ ଝୁଲିଲ
ରଖିଗଲ ଟାଣ ପଣ

ଦେଶ ଭକ୍ତ ଦୁହେଁ ଫାଶୀ ଦଣ୍ଡ ଦେଲ
ଆରେ ହେ ଅସୁର ଗଣ ।
ପ୍ରଣାମ କରୁଛୁ ଦୁଇ ହାତ ଯୋଡ଼ି
ହେ ମୋର ଉତ୍କଳ ଭାଇ
ତୁମପରି ଯୋଗ୍ୟ ସନ୍ତାନ ସତେକି
ଜନମିବ କେବେ କାହିଁ ।



# ଜୟଗାନ

ଜାଗହେ ସରବେ ଗାଅହେ ଗରବେ
ଆଜି ଜନନୀର ଜୟଗାନ
ହୋଇ ଶତମୁଖ ମାଆ ବୋଲି ଡାକ
ତା' ପାଇଁ ଜୀବନ କରଦାନ (ଘୋଷା)

ଉତ୍କଳ ଜନନୀ ଚିର ଗରବିଣୀ
ମାଆ ମୋର ଅଟେ ବୀର ପ୍ରସବିନୀ
ତା'ବୀର ସନ୍ତାନେ ଜୟକରି ଥିଲେ
ଗଙ୍ଗାଠାରୁ ଗୋଦାବରୀ ଯେ ତଟିନୀ
କାହିଁ ପାଇଁ ଆଜି ତା ବୀର ସନ୍ତାନେ
ଶୋଇ ରହିଅଛି ମାରିମାନ ।୧। (ଜାଗ ହେ)

ବକ୍ସି ଜଗବନ୍ଧୁ ଲକ୍ଷ୍ମଣ ନାୟକ
ଜୟୀ ରାଜଗୁରୁ ଖୋର୍ଦ୍ଧାର ପାଇକ
ଆତ୍ମବଳୀ ଦେଲେ ଶହୀଦ ହୋଇଲେ
ରଖି ଚାଲିଗଲେ ଜାତି ଟେକ
କହ କାହିଁ ପାଇଁ ଶୋଇ ରହିଅଛୁ
ସବୁ ଥାଇ ଦେଲୁ ହୀନମାନ ।୨। (ଜାଗ ହେ)

ଓଡ଼ିଆ ଶିଳିପୀ ନିହାଣ ମୁଗୁରେ
ଆଙ୍କିଦେଲା ଛବି ପଥର ବୁକୁରେ
ପୁରୀ କୋଣାରକ ଭୁବନଈଶ୍ୱରେ
ରଖିଲା କିରତି ଏ ସାରା ବିଶ୍ୱରେ
ନିହାଣ ହଜିଛି ମୁଗୁର ଭାଙ୍ଗିଛି
ହୋଇଅଛି ସବୁ ସମଶାନ ।୩। (ଜାଗ ହେ)

ନୀଳାଚଳ ଧାମେ ଜଗତର ନାଥ
ବସି କରୁଅଛି ବିଶ୍ୱ ଆତ ଜାତ
ପତିତ ତାରଣେ ପତିତ ପାବନ
ଉଡ଼ି ଭରିଦିଏ ନୂତନ ଜୀବନ
କହ କହ ଭାଇ ତୋ ବୁକେ କିମ୍ପାଇ
ଜାଗି ନ ଉଠଇ ସ୍ୱାଭିମାନ ।୪। (ଜାଗ ହେ)

ଯେ ଜାତି କରତା କାଳିଆ ଠାକୁର
ଯା' କିରତି ଗାଥା ଅତି ସୁମଧୁର
ଯେ ଜାତି ଅତୀତ ଗଉରବ ମୟ
ଯା'ବୀରତ୍ୱ ଆଗେ ଶତ୍ରୁ ମଣେ ଭୟ
ହୋଇଣ ଦାୟାଦ କିମ୍ପାଇଁ ବିଷାଦ
ଆବୋରିଛି ତୋର ପ୍ରାଣମନ ।୫। (ଜାଗ ହେ)

ଜାଗିଉଠ ବାରେ ମୋ ଭଉଣୀ ଭାଇ
ପୁରୁବ କିରତି ଫେରାଇବା ପାଇଁ
ମାଆ ମୋ ଉତ୍କଳ ଚିର ସମୁଜ୍ଜ୍ୱଳ
ହୋଇବ ଆମରି ସ୍ପର୍ଶ ପାଇ
ଉଠ ଉଠ ବାରେ ତା'ବୀର ସନ୍ତାନେ
ତେଜି ଅନ୍ତରରୁ ସବୁ ମାନ ।୬। (ଜାଗ ହେ)



# ଦଳ ବେହେରା

ମୋର ମୁଣ୍ଡ ପାଇଁ କରିଛ ଘୋଷଣା
　　　　ନିଅ ମୋର ମୁଣ୍ଡ ବଳୀ
କୈବର୍ତ୍ତ ଏ ମୋତେ ଆଣିଅଛି ଧରି
　　　　ଦିଅ ତାକୁ ସୁନା ଥଳି ।

ତାପଙ୍ଗ ଗଡ଼ର ଦଳ ବେହେରା ମୁଁ
　　　　ନାହିଁ ମୋ ଜୀବନେ ଭୟ
ଦୁଃଖୀ ଜନେ ସେବା କରିବା ପାଇଁକି
　　　　ସଦା ମୁଁ ରଖିଛି ଲୟ ।

ଦୁଃଖୀ ଏ କୈବର୍ତ୍ତ ହରାଇଛି ସବୁ
　　　　ଚିଲିକା ଅଥଳ ଜଳେ
ଗ୍ରାମେ ଘର ପୋଡ଼ି ହରାଇଛି ବାସ
　　　　କ୍ଷୁଧାରେ ଗୋଡ଼ ନ ଚଳେ ।

ଭୋଇ ବଂଶ ନୃପେ ଯାଇଛନ୍ତି ହାରି
　　　　ଖୋରଧା ଯାଇଛି ହାରି
ବକ୍‌ସି ଜଗବଂଧୁ ଖୋର୍ଦ୍ଧାର ପାଇକେ
　　　　ଆଖିରୁ ବୁହାନ୍ତି ବାରି ।

ତାପଙ୍ଗ ଗଡ଼ର ବୀର ପ୍ରଜାଗଣ
　　　　କରିଲେ ଘୋର ସମର
ହାରିଗଲେ ସତ ଇତିହାସେ ସଦା
　　　　ରହିବେ ଚିର ଅମର ।

ତୁମ ସୈନ୍ୟଦଳ ତୁମ କଉଶଳ
　　　　ନ ପାରିଲା ମୋତେ ଧରି

ଶତ ଚେଷ୍ଟା ତୁମ ହୋଇଲା ବିଫଳ
ନ ପାରିଲ ବନ୍ଦୀ କରି ।

ନିରାଶ ହୋଇଲ ଘୋଷଣା କରିଲ
କଟା ମୁଣ୍ଡ ଯିଏ ଦେବ
ଅବା ସଶରୀରେ ଧରାଇ ପାରିଲେ
ସୁନା ଥଳି ସିଏ ନେବ ।

ଦିଅ ଦିଅ ତାକୁ ସୁନା ଥଳି ବେଗେ
ମୋତେ ସେ ଆଣିଛି ଧରି
ମୋ ପ୍ରାଣ ବଦଳେ ତା ଦୁଃଖୀ ଜୀବନେ
ସଦା ସୁଖ ଯାଉ ଭରି ।

ସ୍ତମ୍ଭିତ ଫିରିଙ୍ଗି ସ୍ତବ୍ଧ ହୋଇଲା
ନୀରବେ ପୋତିଲା ମଥା
ସତେ ଅବା ମୂକ ହୋଇଲେ ସକଳେ
ତୁଣ୍ଡୁ ନ ସ୍ଫୁରିଲା କଥା ।

ହାରି ନାହିଁ ତୁମେ ହେ ଦଳ ବେହେରା
ହାରିନି ତାପଙ୍ଗ ଜନ
ଫିରିଙ୍ଗି ଶାସନ ହାରି ଯାଇଅଛି
ଦେଖି ତୁମ ବଡ଼ ପଣ ।

ଯୁଗେ ଯୁଗେ ତୁମେ ଅମର ରହିବ
ପ୍ରତ୍ୟେକ ଓଡ଼ିଆ ମନେ
ତୁମରି ବୀରତ୍ୱ ତୁମ ଉଦାରତା
ଝୁରୁଥିବେ ଜନଗଣେ ।



# ଧଉଳି ପାହାଡ଼

ଦୂରେ କେତେ ଦୂରେ ଦୟାନଦୀତୀରେ
ରହିଛୁ ମଉନ ହୋଇ
କ୍ଷୁଦ୍ର ସ୍ରୋତସ୍ୱିନୀ ତୋ ପାଦ ଦେଶରେ
କୁଳନାଦେ ଯାଏ ବୋହି ।

ମୁକ ସାକ୍ଷୀ ହୋଇ ରହିଛୁ ଧଉଳି
ନୀରବେ ହୋଇଛୁ ଠିଆ
ଅତୀତର ସେହି କରୁଣ କାହାଣୀ
ଭାବିଲେ କମ୍ପଇ ହିଆ ।

ଦୂରୁ ବହୁଦୂରୁ ମଗଧ ଦେଶରୁ
ଅଶୋକ ରାଜନ ଆସି
ଯାହା କରିଗଲେ ସେ କଥା ଏବେବି
ସ୍ମୃତି ପଟେ ଯାଏ ଭାସି ।

ଦୁର୍ଜେୟ କଳିଙ୍ଗ ଜୟ କରିବାକୁ
ସୈନ୍ୟ ବଳ ଧରି ସାଥେ
ଧସାଇ ପଶିଲେ ଏହି ବୀରଭୂମେ
ଅସ୍ତ୍ର ଶସ୍ତ୍ର ଧରି ହାତେ ।

କଳିଙ୍ଗର ବୀର ସାହସୀ ସନ୍ତାନେ
ଉଠିଲେ ସହସା ମାତି
ବୀରବାଦ୍ୟ ବାଜି ଉଠିଲା କ୍ଷଣକେ
ରକତ ଉଠିଲା ତାତି ।

ସିଂହ ପ୍ରାୟ ଗର୍ଜି କଳିଙ୍ଗ ସନ୍ତାନେ
ଆରମ୍ଭିଲେ ଘୋରରଣ

ଜନମ ମାଟିର ଟେକ ରଖିବାକୁ
କରିଲେ ଜୀବନ ପଣ ।

ମଗଧ ସଇନ ଦଳବଳ ଆଗେ
ରୋଧି ନ ପାରିଲେ ପଥ
କେ ହାରିଲା ସ୍ୱାମୀ କେ ହାରିଲା ପୁତ୍ର
ମଲେ ଲୋକ ଶତ ଶତ ।

ରଣାଙ୍ଗନ ହେଲା ରକତେ ପ୍ଲାବିତ
ଦୟାଜଳ ହେଲା ନାଲି
ଚାରିଆଡ଼େ ଶୁଭେ ବିକଳ ଚିତ୍କାର
ସବୁଲାଗେ ଖାଲି ଖାଲି ।

ବିଜୟ ଉଲ୍ଲାସେ ଅଶୋକ ରାଜନ
ନିରେଖିଲେ ଯୁଦ୍ଧ କ୍ଷେତ୍ର
ତୋ ଉପରେ ବସି ଯାହା ସେ ଦେଖିଲେ
ଖୋସି ହୋଇଗଲା ନେତ୍ର ।

କଠିନ ହୃଦୟ କ୍ଷଣେ ତରଳିଲା
କଲେ ଘୋର ପଶ୍ଚାତ୍ତାପ
କି କଲି କି କଲି କାହିଁକି ଆସିଲି
କରିଗଲି ମହା ପାପ ।

ଏ ସମୟେ କାହୁଁ ତୋ ଗିରି କନ୍ଦରୁ
ଶୁଭିଲା ଗମ୍ଭୀର ବାଣୀ
ବୁଦ୍ଧଂ ଶରଣଂ ଗଚ୍ଛାମି
ସଙ୍ଘଂ ଶରଣଂ ଗଚ୍ଛାମି
ଧର୍ମଂ ଶରଣଂ ଗଚ୍ଛାମି
ତା' ଶୁଣି ତାଙ୍କର ମନ ବଦଳିଲା
ହୋଇଲା ହୃଦୟ ହାଣି ।

କି ମନ୍ତ୍ର କରିଲୁ ଧଉଳି ପାହାଡ଼
କୁହୁକ କଲୁକି ସତେ
ବଦଳାଇ ଦେଲୁ କଠୋର ହୃଦୟ
ଭାବିଲେ ନ ହୁଏ ପ୍ରତେ ।

କଳିଙ୍ଗ ରାଇଜେ ମୂକ ସାକ୍ଷୀ ହୋଇ
ରହିଥିବୁ କାଳ କାଳ
ନୀରବେ କହିବୁ କଳିଙ୍ଗ ସନ୍ତାନେ
ଧର୍ମ ପଥେ ସଦାଚାଳ ।

ପ୍ରଣାମ କରୁଛି ହେ ଧଉଳି ଗିରି
ଦୂରୁ ଯୋଡହସ୍ତ କରି
କଳିଙ୍ଗ ସନ୍ତାନେ କହି କାନେ କାନେ
ସ୍ୱାଭିମାନ ଦିଅ ଭରି ।



# ରକ୍ତ ତୀର୍ଥ ଇରମ୍

ମନେପଡ଼େ ବୀରଭୂମି ପଞ୍ଜାବର
ଜାଲିଓ୍ୱାନା ଓ୍ୱାଲା ବାଗ୍ କଥା
ଦୁର୍ଦ୍ଧର୍ଷ ସଇତାନ୍ ଡାୟାର ଆଦେଶେ
ନୀରିହ ଜନତା ପରେ ବର୍ଷିଗଲା ଗୁଳି
ଏବେବି ପଡ଼ିଲେ ମନେ ଲାଗେ ବଡ଼ ବ୍ୟଥା ।
ଶତ ଶତ ଦେଶପ୍ରେମୀ ପଡ଼ିଥିଲେ ଟିଳି
ସ୍ୱାଧୀନତା ସଂଗ୍ରାମର ମହା ଯଜ୍ଞେ
ଦେଲେ ଆତ୍ମବଳୀ ।

ସେହିପରି ଆଉ ଏକ ଜାଲିଓ୍ୱାନା ବାଗ
ଓଡ଼ିଶାର ଇତିହାସେ ରଖିଗଲ ଦାଗ
ନଦୀନାଳ ବନ ଘେରା କ୍ଷୁଦ୍ର ଏକ ପଲ୍ଲୀ
ସୁଗନ୍ଧରେ ଭରି ଦେଲା ସତେ ବଣମଲ୍ଲୀ
ଉତ୍କଳ ଜନନୀ କୋଳେ କ୍ଷୁଦ୍ର ଏକ ଗାଁ
ଯୁଗଯୁଗ ପାଇଁ ସେ ଯେ ରଖିଗଲା ନାଁ
ଗାନ୍ଧି ଗୋପବନ୍ଧୁ ଡାକ ପଡ଼ିଲା କାନରେ
ପରାଧୀନ ଶୃଙ୍ଖଳରୁ ମୁକ୍ତ ହେବାପାଇଁ
ଆଗ୍ରହ ଜାଗିଲା ବେଗେ ଇରମ ପ୍ରାଣରେ
ସଭା ସମିତି ଚାଲିଲା କେତେ ଆଲୋଚନା
ଲୁଣ ମରା ଥାନା ଘେରା ଶୋଭାଯାତ୍ରା କଥା
ଆଦି ଚାଲେ ଡନାଘନା ।

ଉଣେଇଶ ଶହ ବୟାଳିଶ ମାସ ସେପ୍ଟେମ୍ବର
ନୀଳ ରଙ୍ଗେ ରଞ୍ଜିତ ମେଘମାଳା ଢାଙ୍କିଛି ଅମ୍ବର
ପୂର୍ବ ଦିନ ଅଠାଇଶ ତାରିଖ ସନ୍ଧ୍ୟା ସମୟରେ
ମେଲଣ ପଡ଼ିଆଠାରେ ହେବ ସଭା

ଡାକ ହେଲା ଆସ ସର୍ବେ ନ କରି ଭୟରେ
ତିନିପାଖ କଣ୍ଟାବାଡ଼ ଜଙ୍ଗଲ ବହଳ
ଏକ ପାଖେ ଠିଆ ବରଗଛ ଲମ୍ୱାଇ ଓହଳ
ହଠାତ୍ ଶୁଭିଲା ଫାଙ୍କା ଗୁଳିର ଆବାଜ
ଚାହୁଁ ଚାହୁଁ ଆସିଗଲେ ପୁଲିଶ ଫଉଜ
ଆଖିବୁଜା ବର୍ଷିଗଲା ଗୁଳି
ଖଣ୍ଡିଆ ଖାବରା କେତେ, କେତେ ଗଲେ ଟଳି ।

ତଥାପି ଶୁଭୁଚି ଧ୍ୱନୀ
"ମହାତ୍ମା ଗାନ୍ଧିକି ଜୟ
ଭାରତ ମାତାକି ଜୟ
ବନ୍ଦେ ମାତରଂ"
କ୍ଷଣକେ ଆର୍ତ୍ତ ଚିତ୍କାର
ପୁଣି ହୋଇଗଲା ତୁନି
ଅଣତିରିଶ ସଂଗ୍ରାମୀ ହୋଇଲେ ସହୀଦ
ସତେ ଅବା ଘୋଟିଗଲା କାଳିଆ ବଉଦ
କେତେଜଣ କଣ୍ଟାବାଡ଼େ ରହିଲେ ଲଟକି
ଆଉ କେତେ ପଥ ମଧ୍ୟେ ରହିଲେ ଅଟକି
ଚଉଦିଗେ ଘୋଟିଗଲା ବିଷାଦର ଛାୟା
ଆର୍ତ୍ତନାଦ କରୁଣ ଚିତ୍କାର ଶବଦେ
ଫାଟିଗଲା ହିଆ ।

ସ୍ୱାଧୀନତା ସଂଗ୍ରାମର ମୁକସାକ୍ଷୀ ତୁହି
ରକ୍ତତୀର୍ଥ ଇରମ ହେ, ପ୍ରଣାମ କରୁଛି
ଯୋଡ଼ହସ୍ତ ହୋଇ ।



# ବିଜୟୀ ବିଜୟାନନ୍ଦ

ଜଳସ୍ଥଳ ଆକାଶ ପବନ
କରୁଥିଲା କରୁଥିବ ତବ ଜୟଗାନ
ପ୍ରଚଣ୍ଡ ସ୍ୱାଭିମାନୀ ତୁମେ ଉତ୍କଳମାତାର
ଜନମ ଭୂଇଁର ସେବା କରିବାରପାଇଁ
ଉତ୍ସର୍ଗ କରିଲ ପ୍ରାଣ
ବାଧାବିଘ୍ନ ଦୂରକଲ ନକରି ଖାତିରି ।
ସୁଦକ୍ଷ ବିମାନଚାଳକ ତୁମେ ଅତି ଦୁଃସାହସୀ
ସୁଦୂର ଇଣ୍ଡୋନେସିଆରୁ ଭାରତ ପର୍ଯ୍ୟନ୍ତ
ଚଳାଇଲ ବ୍ୟୋମଯାନ ନିର୍ଭୟରେ ବସି
ଓଡ଼ିଶା ଶାସନ ଡୋରି ସ୍ୱହସ୍ତରେ ଧରି
ଶ୍ରେଷ୍ଠ ରାଜ୍ୟ ଓଡ଼ିଶାକୁ କରିବା ପାଇଁକି
ଯୁବପିଢ଼ି ମନେ ଦେଲ ସ୍ୱାଭିମାନ ଭରି
ଝୁରେ ପାରାଦ୍ୱିପ ଝୁରେ ବହୁ ଅନୁଷ୍ଠାନ
ଥିବା ଯାଏ କରୁଥିବ ତୁମ ଗୁଣଗାନ
ଭୋଗ ଛାଡ଼ି ତ୍ୟାଗ କଲ ସକଳ ସଂପଦ
ଜନସେବାରେ ମଜ୍ଜିଲ ଲଭିଲ ଆନନ୍ଦ
ଭାରତ ରତନେ ଆମ ନାହିଁ ହେ ଖାତିର
ତୁମେ ତ ରତନ ହାର ପ୍ରତି ଓଡ଼ିଆର
କି ବର୍ଣ୍ଣିବି ତୁମ ଗୁଣ କ୍ଷୁଦ୍ର ଜୀବ ହୋଇ
ଗାଇବାକୁ ତୁମ ଯଶ ଭାଷା ମୋର ନାହିଁ ।
ସ୍ୱର୍ଗେ ଥାଇ ଝରିପଡୁ ଆଶିଷ ତୁମର
କିଂ ଦେବୁ ତୁମକୁ ଆମେ
ବିଜୟୀ, ବିଜୟାନନ୍ଦ,
ଘେନ ହେ ଜୁହାର ।

●

# ନେତାଜୀ ସୁଭାଷ

ରକ୍ତ ଦିଅ ରକ୍ତ ଦିଅ ଦେବି ସ୍ୱାଧୀନତା
ବଜ୍ରଗମ୍ଭୀର ସ୍ୱରେ କହିଥିଲ
ଏବେବି ପଡ଼ଇ ମନେ ତୁମର ସେ କଥା ।
ଭିନ୍ନ ଏକ ସ୍ୱାଧୀନତା ରଣେ ତୁମେ ଦେଲ ଝାସ
ଦୁର୍ଦ୍ଧର୍ଷ ଇଂରେଜ ପ୍ରାଣେ ଜଗାଇଲ ତ୍ରାସ
ନ ପାରିଲା ଧରି
ବିଫଳ ହୋଇଲା ଶେଷେ ସବୁ ଚେଷ୍ଟାକରି
'ଜୟହିନ୍ଦ' ଧ୍ୱନୀ ଦେଇ ଦିଲ୍ଲୀଚଲୋ ଡାକ
ଯୁଦ୍ଧ ବଂନ୍ଦୀ ଯେତେ ଥିଲେ ସବୁ ହେଲେ ଏକ ।
ଥରିଲା ଭାରତ ସାରା ଥରିଲା ଇଂରେଜ
ସଜ କରି ରଖିଲା ସେ ଯେତେକ ଫଉଜ
ଜୀବନେ ମରଣେ ଅବା ଧରି ନ ପାରିଲା
ଯେତେଯେତେ ଚେଷ୍ଟାକରି ଶେଷରେ ହାରିଲା ।
ଧନ୍ୟ ଓଡ଼ିଆ ବଜାର ଧନ୍ୟ ଏ କଟକ
ଏପରି ସାହାସୀ ବୀରେ ଜନ୍ମ ଦେଲୁ ତୁହି
ଯିଏ କେବେ ଲକ୍ଷ୍ୟ ପଥୁ ନ ହେଲେ ଅଟକ
ଜୀଇଛ କି ମରିଛ କେହି ଜାଣି ନ ପାରନ୍ତି
ଶତ ଚେଷ୍ଟା କରି ମଧ୍ୟ ହାର ସେ ମାନନ୍ତି ।
ତୁମେ କାଳ ଜୟୀ ତୁମେ ମୃତ୍ୟୁଞ୍ଜୟୀ
ଅଗଣିତ ଜନମନୁ ମରି ନ ପାରିବ
ସଭିଙ୍କ ମନରେ ଅଛି ସଦା ରହିଥିବ ।



# ଚିର ନମସ୍ୟ

ଚିର ନମସ୍ୟ କୃଷ୍ଣ ଚନ୍ଦ୍ର ତୁମେ
ପାରଳାର ମହାରାଜା
ଓଡ଼ିଆ ଜାତିର ତ୍ରାଣକର୍ତ୍ତା ବୋଲି
ସାରା ଜଗତର ବାଜୁଛି ବାଜା ।

ବିଲାତ ରାଇଜେ ଯାଇଥିଲ ତୁମେ
ଓଡ଼ିଆର ଦାବୀ ନେଇ
ଗୋଲଟେବୁଲ ବଇଠକରେ
ସଭିଙ୍କୁ ଦେଲ ଚେତାଇ ।

ଭାରତ ସଚିବ ସାମୁଏଲ ହୋର୍
ତୁମରି ଭାଷଣ ଶୁଣି
ସ୍ତବ୍ଧ ହୋଇଲେ, ଅନ୍ୟ ସଭ୍ୟଗଣ
ସନ୍ତୋଷେ ହୋଇଲେ ତୁନି ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ
ମାନ୍ୟତା ଦେବାପାଇଁ
ଏକମତ ହେଲେ ସମସ୍ତ ସଦସ୍ୟ
ଦ୍ୱିମତ କାହାରି ନାହିଁ ।

ବିଜୟରମାଳା ପିନ୍ଧି ଗଜପତି
ଓଡ଼ିଶା ଆସିଲ ଫେରି
ଆନନ୍ଦ ଉଲ୍ଲାସେ ମାତିଗଲେ ସର୍ବେ
ଜୟମାଲ୍ୟ ଦେଲେ ଘେରି ।

ସୀମା ନିର୍ଦ୍ଧାରଣେ ଯେତେ ଯେତେ ସବୁ
ପ୍ରତିବନ୍ଧକ ଥିଲା

ତୁମରି ଚେଷ୍ଟାରେ, ତୁମରି କୌଶଳେ
ସବୁ ଦୂର ହୋଇଗଲା ।

ଜନମ ଲଭିଲା ନୂତନ ଓଡ଼ିଶା
ତୁମରି ପ୍ରଚେଷ୍ଟା ବଳେ
ଚିର ସ୍ମରଣୀୟ ଚିର ବନ୍ଦନୀୟ ଗଜପତି ତୁମ
ପ୍ରଣାମ ହେ ପାଦ ତଳେ ।



# ଉତ୍କଳ କେଶରୀ

ନବ ଉତ୍କଳର ନିର୍ମାତା ତୁମେ
ଉତ୍କଳ ମାତାର ଯୋଗ୍ୟ ସନ୍ତାନ
ନୂତନ ଓଡ଼ିଶା ଗଢ଼ିବା ପାଇଁକି
ଦେଇ ଚାଲିଗଲ ନୂଆ ସନ୍ଧାନ ।

ସ୍ୱାଧୀନତା ରଣେଝାସ ଦେଲ ତୁମେ
କେତେ କେତେ ଥର ବରିଲ କାରା
ଉତ୍କଳ ମାତାର ଉନ୍ନତି ପାଇଁକି
ଲଢ଼େଇ କରିଛ ଜୀବନ ସାରା ।

ନୂଆ ରାଜଧାନୀ ଝୁରଇ ତୁମକୁ
ହୀରାକୁଦ ବନ୍ଧ ତୁମରି ସୃଷ୍ଟି
ଆଉ କେତେ କେତେ ଯୋଜନା ଗଢ଼ିଲ
ନବ ଯୋଜନାରେ ରଖିଲ ଦୃଷ୍ଟି ।

କେତେ ଯେ ସାହିତ୍ୟ ସୃଷ୍ଟିକରିଲ
କଲମ ତୁମର ଚାଲିଲା ଲେଖି
ଗାଁ ମଜ୍‌ଲିସ୍ କାବ୍ୟ କବିତା
'ପ୍ରଜାତନ୍ତ୍ର' ତାର ରହିଛି ସାକ୍ଷୀ ।

ଝଙ୍କାର ତୋଳିଲ ସାହିତ୍ୟ ଜଗତେ
ଓଡ଼ିଶାର ଇତିହାସ ଲେଖିଲ
ଉତ୍କଳ ମାତାର ସେବା କରିବାକୁ
ସଦା ସରବଦା ସ୍ୱପ୍ନ ଦେଖିଲ ।

କେନ୍ଦ୍ର ମନ୍ତ୍ରୀ ହେଲ, ରାଜ୍ୟପାଳ ହେଲ
ମୁଖ୍ୟମନ୍ତ୍ରୀ ହେଲ ଓଡ଼ିଶା ଦେଶେ

ଜନମ ମାଟିର ସେବାରେ ଜୀବନ
ବିତାଇ ସରଗେ ଚାଲିଲ ଶେଷେ ।

ନାହିଁ ମୋର ଜ୍ଞାନ ନାହିଁ ମୋ ଶକତି
ବର୍ଣ୍ଣି ପାରିବି ମୁ ତୁମରି ଗୁଣ
ଉତ୍କଳ କେଶରୀ, ମହତାବ ତୁମେ
ସାଦରେ ମୋ ଭକ୍ତି ପ୍ରଣାମ ଘେନ ।



## ରକ୍ତ କମଳ ଚକରା ବିଷୋଇ

ଘଞ୍ଚ ଜଙ୍ଗଲ ଘେରା
କେଉଁ ଏକ ଅଜ୍ଞାତ ପଲ୍ଲୀରେ
ଜନମ ଲଭିଲ ତୁମେ ହେ ସାହସୀ ବୀର
ଅଜଣା ଅଶୁଣା ଏକ କନ୍ଧ ପରିବାରେ
ପିଲାଦିନୁ ଖେଳିଥିଲ
ବାଘ ଛୁଆ ସଙ୍ଗେ
ଖଣ୍ଡା ଯୁଦ୍ଧ ଲାଠି ଖେଳ ତୀର ଚଳା ଶିଖି
ଚକିତ କରିଲ ସର୍ବେ ଖେଳି ନାନା ରଙ୍ଗେ
ପିଲାଦିନୁ ପିତୃହରା ହେଲ
ପିତୃହନ୍ତା ଇଂରେଜ ପରେ ପ୍ରତିଶୋଧ ପାଇଁ
ଦୁର୍ବାର ଶପଥ ନେଲ
କରି କନ୍ଧ ମେଳି
ସବୁରି ହୃଦୟେ ତୁମେ
ଦେଶ ପ୍ରେମଭାବ ଦେଇଥିଲ ଢାଳି
ଦୀର୍ଘ ଦଶବର୍ଷ ଧରି ସଂଗ୍ରାମ କରିଲ
ଅତ୍ୟାଚାରୀ ଇଂରେଜ ଶକ୍ତିକୁ
ତୁମେ ଦୋହଲାଇ ଦେଲ ।
ହତ୍ୟା ଅତ୍ୟାଚାର ଶୋଷଣ ବିରୁଦ୍ଧେ
ଲଢ଼ାଇ କରିଲ
ଇଂରେଜର ଗୁଳି ଗୋଳା ବନ୍ଧୁକ ମୁନକୁ
କେବେ ନ ଡରିଲ
ଠାଏ ଠାଏ କନ୍ଧମେଳି କରି
ସଭିଙ୍କ ହୃଦୟେ ଦେଲ
ଦେଶ ପ୍ରେମ ଭରି ।

ଇଂରେଜର ରାଜଶକ୍ତି ଦୋହଲି ଉଠିଲା
କଳେ ବଳେ କଉଶଳେ ତୁମକୁ ଧରିବା ପାଇଁ
ଷଡ଼ଯନ୍ତ୍ର କଲା ।
ଗରିଲା ଯୁଦ୍ଧରେ ତୁମେ ଥିଲ ପାରଙ୍ଗମ
ଚାହୁଁ ଚାହୁଁ କେଉଁ ଆଡ଼େ ହେଲ ଅନ୍ତର୍ଦ୍ଧାନ
ଇଂରେଜର ଶତଚେଷ୍ଟା ହୋଇଲା ବିଫଳ
କନ୍ଧମାଳ ଜଙ୍ଗଲରେ ରହି ଚକରା ବିକ୍ଷୋଭ
ରଚିଗଲ ରକ୍ତତୀର୍ଥ
ଫୁଟାଇଲ ରକତ କମଳ ।



# ଚନ୍ଦନ ହଜୁରୀ (ଚାଖି ଖୁଣ୍ଟିଆ)

କାର୍ତ୍ତିକ ମାସର ବଡ଼ ଏକାଦଶୀ
ଚନ୍ଦନ ଲାଗିର ବେଳା
ପିତା ମାତାଙ୍କର କୋଳ ପୂର୍ଣ୍ଣକରି
ଶ୍ରୀକ୍ଷେତ୍ରେ ଜନମ ନେଲା ।
ପିତା ଭୀମସେନ ଖୁଣ୍ଟିଆ ସେବକ
ମାତା ଯେ କମଳା ବତି
ପୁଅଟିଏ ପାଇଁ ଶ୍ରୀପଦେ ଗୁହାରୀ
କରନ୍ତି ବିନୟେ ଅତି ।
ସେବକ ବିନତୀ ଶୁଣିଲେ ଶ୍ରୀପତି
ପୁଅ ଜନମିଲା ଏକ
ଭକତ ବତ୍ସଳ ପ୍ରଭୁ ଭାବଗ୍ରାହୀ
ରଖିଲେ ଭକତ ଟେକ ।
ପୁଅ ଜନମିଛି ପାଇଲେ ସନ୍ଦେଶ
ଚନ୍ଦନ ଲାଗିର ବେଳେ
ହରଷ ହୋଇଲେ ଖୁସି ମନାଇଲେ
ଚନ୍ଦନ ନାମ ଦେଲେ ।
ଚନ୍ଦନ ହଜୁରୀ ନାମଟି ବହିଲେ
ଚନ୍ଦ୍ର କଳାପରି ବଢ଼ି
ପିଲାଟି ଦିନରୁ ମହକିଲା ବାସ
ସତେ ଅବା ମଲ୍ଲୀକଢ଼ି ।
ପିଲାଟି ଦିନରୁ ବହୁତ ଚଗଲା
ଥିଲା ବଡ଼ ଦୁଷ୍ଟପଣ
ଚାହାଳିକୁ ଗଲେ ପାଠ ସେ ପଢ଼ିଲେ
ଠିକ୍ ହେବ ବୋଲି କହନ୍ତି ପଡ଼ିସା ଗଣ ।

ଅଳପ ବୟସେ ହାସଲ କରିଲେ
ଯେତେ ଯେତେ ପାଠ ଥିଲା
ଓଡ଼ାଙ୍କ ପେନାଙ୍କ ଲୀଳାବତୀ ସୂତ୍ର
ପଣକିଆ ଗୋପଲୀଳା ।
ମାନସାଙ୍କ ଆଦି ଜିଭରେ ରହିଲା
କହିଗଲେ ସବୁ ପାଠ
ଶ୍ରେଣୀପରେ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଲେ
ବୋଲାଇଲେ ଭଲ ଚାଟ ।
ପିଲାଟି ଦିନରୁ ଥିଲେ ଦୁଃସାହସୀ
ଅମାନିଆ ଜିଦ୍ ଖୋର
ସ୍ୱାଧୀନ ଚେତା ସେ ବଡ଼ ଅଭିମାନୀ
ଧୈର୍ଯ୍ୟଶୀଳ ଥିଲେ ଘୋର ।
ବାପା ମା'ଙ୍କର ଅଲିଅଳୀ ପୁଅ
ତୀକ୍ଷ୍ଣ ଚାଖୁ ପରି ମନ
ଚାଖି ଖୁଣ୍ଟିଆରେ ନାମଟି ବହିଲେ
ଜାଣିଲେ ସକଳ ଜନ ।
ଯଥା ସମୟରେ ବ୍ରତୋପନୟନ
କାର୍ଯ୍ୟ ହେଲା ସମାପନ
ଏବେଠୁଁ ଖୋଜିଲେ ଚାଖିଆପାଇଁକି
ସରଳ କନ୍ୟା ରତନ ।
ବାହାଘର ପାଇଁ ବାପ ମା' ସଦା
ଚାହୁଁଥାନ୍ତି ଦିନ ଗଣି
ଶେଷରେ ପାଇଲେ ପାଖ ଶାସନରୁ
ସୁଲକ୍ଷଣା କନ୍ୟା ମଣି ।
ବିବାହର ଶେଷେ ଦୁଇବର୍ଷ ପରେ
ଅକ୍ଷୟ ତୃତୀୟା ଦିନ

ଜଗନ୍ନାଥଙ୍କର ସେବାରେ ନିଯୁକ୍ତି
ପାଇହେଲେ ହୃଷ୍ଟ ମନ ।
ବାପାଙ୍କ ବେଉସା ଯାତ୍ରୀ ବ୍ୟବସାୟ
ଆଦରି ନେଲେ ସେ ପରେ
ଜଗନ୍ନାଥ ଧର୍ମ ପ୍ରଚାରେ ମଜ୍ଜିଲେ
ବୁଲି ବୁଲି ଘରେ ଘରେ ।
ସେକାଳେ ଚିମାଜି ମରହଟ୍ଟାବୀର
ଥିଲେ କାଶୀ ରାଇଜର ରାଜା
ପରଜା ରଂଜନ ବୋଲି ତାଙ୍କ ନାମେ
କାଶୀରେ ବାଜଇ ବାଜା ।
ସୁଯୋଗ୍ୟ ଦେବାନ ମୋରାପନ୍ତଙ୍କର
ସୁପରାମର୍ଶ ପାଇ
ଆନନ୍ଦ ମନରେ ରହିଥିଲେ ପ୍ରଜା
ଅସନ୍ତୋଷ କା'ର ନାହିଁ ।
ମୋରାପନ୍ତଙ୍କର କନ୍ୟା ମନୁବାଇ
ଥିଲେ ସେ ବଡ଼ ଚତୁରି
ରୂପେ ଗୁଣେ ପୂର୍ଣ୍ଣା ହୋଇ ମନୁବାଇ
ମୋହିଲେ ମନ ସବୁରି ।
ଝାନ୍‌ସୀର ରାଜା ଗଙ୍ଗାଧର ରାଓ
ମନୁଙ୍କୁ ବିବାହ କଲେ
ସୁଖ ସନ୍ତୋଷରେ ରହିଥିଲେ ଦୁହେଁ
ଦିନ କାଟୁଥିଲେ ଭଲେ ।
ବାହାଘରପରେ ମନୁବାଇ ହେଲେ
ଲକ୍ଷ୍ମୀ ବାଇରୂପେ ଜଣା
ସର୍ବ ସୁଲକ୍ଷଣେ ପୂର୍ଣ୍ଣଥିଲେ ସେହି
ନଥିଲେ କାହିଁରେ ଉଣା ।

ଯଥା ସମୟରେ ଜନମିଲା ପୁଅ
ମନଗଗଲା ସୁଖେ ଭରି
ରାଜାଙ୍କର ପୁତ୍ର ଜନମିଛି ବୋଲି
ରାଇଜେ ପଡ଼ିଲା ହୁରି ।
ଚାରି ବର୍ଷ ଗଲା ରାଜ ଉଆସରେ
ସୁଖ ସମ୍ଭୋଗରେ ବିତି
ଚନ୍ଦର ଉଦିଆ ପରି ରାଜାପୁଅ
ବଢୁଥାଇ ନିତି ନିତି ।
ଜୀବନ ଆକାଶେ ଛାଇ ହୋଇଗଲା
କଳାମେଘ କାହୁଁ ଆସି
ଘୋଟିଲା ଅନ୍ଧାର ସେ ସୁନା ସଂସାରେ
ସବୁସୁଖ ଦେଲା ନାଶି ।
ଅକାଳେ ଝଡ଼ିଲା ଜୀବନ ଲତାରୁ
ସୁନା ଫୁଲ ପରି ପୁଅ
ପରେ ପରେ ରାଜା ଗଲେ ଆରପାରେ
ଛୁଟିଲା ଲୋତକ ସୁଅ ।
ଏ ବିପଦ ବେଳେ ଚନ୍ଦନ ହଜୁରୀ
ଆସି ହେଲେ ଉପଗତ
ତୀର୍ଥଗୁରୁ ରୂପେ ମାନିଥିଲେ ଲକ୍ଷ୍ମୀ
ଲୋଡ଼ିଲେ ତାଙ୍କର ମତ ।
ତୀର୍ଥ ଗୁରୁଙ୍କର ଉପଦେଶେ ଲକ୍ଷ୍ମୀ
ଘେନିଲେ ଶାସନଭାର
ପ୍ରଜାମାନେ ଶୁଣି ଆନନ୍ଦ ହୋଇଲେ
ନଥିଲା ଆପତ୍ତି କା'ର ।
ପୋଷ୍ୟପୁତ୍ର ପାଇଁ ମନ କଲେ ଲକ୍ଷ୍ମୀ
ଇଂରେଜ ଶୁଣିଲା ନାହିଁ
ରାଜସ୍ୱତ୍ୱ ଲୋପ ବାଧକ ସାଜିଲା
ପୋଷ୍ୟ ପୁତ୍ର ନେବାପାଇଁ ।

ଇଂରେଜ ସାମ୍ରାଜ୍ୟେମିଶିଗଲା ଝାନ୍‌ସି
ରୋକି ନପାରିଲେ କେହି
ବିଦ୍ରୋହର ସ୍ୱର ଉଠିଲା ସର୍ବତ୍ର
ପ୍ରଜାଏ ଉଠିଲେ ଚେଇଁ ।
ଏ କାଳେ ଚନ୍ଦନ ବୁଲି ଘରେ ଘରେ
ଆରମ୍ଭ କରିଲେ ମେଳି
ସୈନ୍ୟ ବାହିନୀରେ ଏକତାର ବହ୍ନି
ଉଠିଲା ସଜୋରେ ଜଳି ।
ଇଂରେଜ ବିରୁଦ୍ଧେ ଆରମ୍ଭିଲେ କାର୍ଯ୍ୟ
ବଢ଼ାଇଲେ ସୈନ୍ୟବଳ
ଝାନ୍ସିର ରକ୍ଷା ପାଇଁ ଫଉଜରେ
ଯୋଗ ଦେଲେ ଦଳଦଳ ।
ନାନା ସାହେବଙ୍କୁ ଭେଟିଲେ ଚନ୍ଦନ
ସବୁ କଥା ଜଣାଇଲେ
ତାନ୍ତିଆ ଟୋପେଙ୍କ ସହଯୋଗ ପାଇଁ
ଶେଷେ ତାଙ୍କୁ ମନାଇଲେ ।
ପେଷବାର ରାଜା ବାଜି ରାଓଙ୍କର
ପୋଷ୍ୟ ପୁତ୍ର ଥିଲେ ନାନା
ରାଜସ୍ୱତ୍ୱଲୋପ ଲାଗୁ ହେଲା ତହିଁ
ପୋଷ୍ୟ ପୁତ୍ର ହେଲା ମନା ।
ସମଦଶା ଥିଲା ଦୁଇ ରାଇଜର
ସମସ୍ତେ ଏକାଠି ହେଲେ
ସଜବାଜ ହୋଇ ଦୁଇ ରାଜ୍ୟ ସୈନ୍ୟ
ଯୁଦ୍ଧର ଡାକରାଦେଲେ ।
ଲକ୍ଷ୍ମୀ ବାଇଙ୍କର ପ୍ରେରଣାର ଉତ୍ସ
ଥିଲେ ଚନ୍ଦ ହଜୁରୀ
ସୈନ୍ୟ ବାହିନୀରେ ସାହସ ଯୋଗାଇ
ମନ ଜିଣିଲେ ସବୁରି ।

ଲାଗିଲା ସମର ଅତି ଗୁରୁତର
ସରବେ ଉଠିଲେ ମାତି
ଝାନ୍ସିର ମାନ ରଖିବା ପାଇଁକି
ରକତ ଉଠିଲା ତାତି ।
ଝାନ୍‌ସି ସଇନ କରିଲେ ଶପଥ
ଦୁର୍ଗର ରକ୍ଷା ପାଇଁ
ପ୍ରବେଶ ଦୁଆର ବନ୍ଦ କରିଦେଲେ
ନ ପାରିଲେ ପଶି କେହି ।
ଏକତାର ମନ୍ତ୍ର ଫୁଙ୍କିଲେ ଚନ୍ଦନ
ପ୍ରତି ସଇନର କାନେ
ଶତସିଂହର ସାହସ ଜାଗିଲା
ପ୍ରାଣେ ପ୍ରାଣେ ମନେମନେ ।
ଇଂରେଜ ଫଉଜ ଘେରିଗଲେ ଦୁର୍ଗ
ନ ପାରିଲେ ପଶି କେହି
ଆକ୍ରମଣ କଲେ ଅତି ଦର୍ପରେ
ଗୁଳି ଗୋଳା ତୋପ ନେଇ ।
ଅଜେୟ ଅଟଳ ରହିଛି ଦୁର୍ଗ
ସଦର୍ପେ ହୋଇଛି ଠିଆ
ବିଫଳତା ଗ୍ଳାନି ଘେରିଲା ଇଂରେଜ
ଥରିଲା ତାଙ୍କର ହିଆ ।
ଚନ୍ଦନ ହଜୁରୀ ଜାଗ୍ରତ ପ୍ରହରୀ
ସୈନ୍ୟବଳ ସାଥେ ଧରି
ଦୁର୍ଗ ମଧ୍ୟେ ଥାଇ ପହରା ଦିଅନ୍ତି
ହୃଦୟେ ସାହସ ଭରି ।
ଏ କାଳେ ଶୁଭିଲା ଘୋର ପାଟିଗୋଳ
ସରିଗଲା ସରିଗଲା
ଚନ୍ଦନ ଦେଖିଲେ ବୋରହାର ଦ୍ୱାର
ହୋଇଯାଇଅଛି ଖୋଲା ।

ବିଶ୍ୱାସ ଘାତକ ବୁନ୍ଦେଲ ଠାକୁର
ଦେଇଅଛି ଦ୍ୱାର ଖୋଲି
ପଶିଆସୁଛନ୍ତି ଫିରିଙ୍ଗି ଫଉଜ
ଜୟ ଜୟ କାର ବୋଲି ।
ଚନ୍ଦନଙ୍କ ଠାରୁ ଦୁଃସମ୍ବାଦ ପାଇ
ଗୁପ୍ତଦ୍ୱାର ବାଟ ଦେଇ
ପଳାୟନ କଲେ ଲକ୍ଷ୍ମୀବାଇ ବେଗେ
ପୋଷ୍ୟ ପୁତ୍ର ସଙ୍ଗେ ନେଇ ।
ଛଦ୍ମବେଶ ଧରି ଚନ୍ଦନ ହଜୁରୀ
ଗଲେ ଦୁର୍ଗରୁ ବାହାରି
ଅତି ସନ୍ତର୍ପଣେ ଚାଲିଗଲେ ତହୁଁ
ନ ଥିଲା ଦୃଷ୍ଟି କାହାରି ।
ରାଣୀଙ୍କୁ ଖୋଜିଲେ ଚନ୍ଦନ ହଜୁରୀ
ନ ପାଇଲେ ତାଙ୍କୁ କାହିଁ
ଶେଷରେ ଦେଖିଲେ ରକ୍ତାକ୍ତ ଦେହରେ
ରାଣୀ ପଡ଼ିଛନ୍ତି ରହି ।
ଦେଖୁ ଦେଖୁ ତାଙ୍କ ପ୍ରାଣ ଚାଲିଗଲା
ଚନ୍ଦନ ବିଷାଦ ମନେ
ସଂସ୍କାର କରିଲେ ସେହି ନଦୀକୂଳେ
ଘେନି ନିଜ ପ୍ରିୟ ନିଜେ ।
ଝାନ୍‌ସିର ଉଦ୍ଧାର ପାଇଁ ଲଢ଼ିଲଢ଼ି
ଶେଷେ ଦେଲେ ପ୍ରାଣବଳୀ
ପ୍ରିୟ ଝାନ୍‌ସିର ମୁକ୍ତି ପାଇ ଲଢ଼ି
ଶେଷରେ ପଡ଼ିଲେ ଟଳି ।
କାଲ୍‌କା ପ୍ରାସାଦେ ଲୁଚିଲେ ଚନ୍ଦନ
ସାଧୁ ଗଙ୍ଗାଦାସ ନାମେ
ଇଂରେଜ ଖୋଜୁଛି ଚନ୍ଦନ ହଜୁରୀ
ପୁରେ ପୁରେ ଗ୍ରାମେ ଗ୍ରାମେ ।

ମନରେ ପଡ଼ିଲା ନୀଳା ଚଳ ଧାମ
ପ୍ରିୟତମା ପତ୍ନୀ ମଣି
ଫେରିବା ପାଇଁକି ବଳାଇଲେ ମନ
ଚାଲୁଥାନ୍ତି ଦିନ ଗଣି ।
ଏଣେ ପଡ଼ୋଶୀଏ ପ୍ରଚାର କରିଲେ
ଚାଖିଆ ନାହିଁ ଜୀବନେ
ଜୀଇଥାନ୍ତା ଯଦି ଫେରି ଆସିଥାନ୍ତା
ଘରକଥା ହେଜି ମନେ ।
ପଡ଼ୋଶୀଙ୍କ ଭାଷା ଅସହ୍ୟ ହୋଇଲା
ବିଧବା ହୋଇଲେ ମଣି
ବିଷାଦ ମନରେ କଟାଇଲେ କାଳ
ଦିନ ଗଲା ଗଣି ଗଣି ।
ଚାରିବର୍ଷ ପରେ ଫେରିଆସି ଚାଖି
ଯାହା ସେ ଦେଖିଲେ ଘରେ
ପ୍ରିୟତମା ପତ୍ନୀ ବିଧବା ହୋଇଛି
ବଞ୍ଚିଥାଉ କେବା ମରେ ।
ବନ୍ଧୁ ଦିବ୍ୟ ସିଂହ ଘରେ ସେ ରହିଲେ
ଛଦ୍ମବେଶେ ନିତି ନିତି
ମନ୍ଦିରକୁ ଗଲେ ସେବା ସେ କରିଲେ
ପ୍ରଭୁ ପଦେ ଦେଇ ମତି ।
କିଛିଦିନ ପରେ ସମସ୍ତେ ଜାଣିଲେ
ଚାଖିଆ ଆସିଛି ଫେରି
ଚାଖିଆ ବଞ୍ଚିଛି ବୋଲି ସବୁଆଡ଼େ
ପଡ଼ିଗଲା ବେଗେ ହୁରି ।
ମୁକ୍ତି ମଣ୍ଡପରେ ପଣ୍ଡିତ ସଭାରେ
ସର୍ବେ ଏକମତେ ହେଲେ

ପୂଜା ହୋମକରି ଚନ୍ଦନକୁ ପୁଣି
ସେବାରେ ନିଯୁକ୍ତି ଦେଲେ
ପଞ୍ଚଗବ୍ୟ ହୋଇ ସିନ୍ଦୁର ଲଗାଇ
ସଧବା ହୋଇଲେ ମଣି
ପ୍ରଭୁ ପଦେ ଚିତ୍ତ ଦେଇ ସେବାକଲେ
ସ୍ୱାମୀଙ୍କର ମନଜିଣି ।
ଚିତ୍ତ ଦେଲେ ଚାଖି ପ୍ରଭୁଙ୍କ ସେବାରେ
ମନପ୍ରାଣ ସଦା ମଜ୍ଜେ
ଗାଇଲେ ଜଣାଣ ସୁଲଳିତ କଣ୍ଠେ -
''ମନ୍ଦର ଧର ନୀଳ ଗିରି ବାସୀ
କନ୍ଦର ବାସୀ ପ୍ରାୟେ ଅଛ ବସି
ପନ୍ଦର ନେତ୍ର ଧାତା ପୁରନ୍ଦର
ବନ୍ଦନା କରନ୍ତି ଯେଉଁ ପୟର ହେ
ଛନ୍ଦଛାଡ଼ ଦେବ ରାଜେ ହେ
ନନ୍ଦନନ୍ଦନ ଶ୍ରୀ ଚରଣାର ବିନ୍ଦେ
ଚନ୍ଦନ ହଜୁରୀ ଭଜେ ହେ ।''
ଧନ୍ୟ ଧନ୍ୟ ତୁମେ ଚନ୍ଦନ ହଜୁରୀ
ପ୍ରଭୁଙ୍କ କରୁଣା ବଳେ
ଉତ୍କଳ ମାତାର ନାମ ରଖିଗଲ
ଯଶ ରଖି ମହୀତଳେ ।



# କଳାପାଣିର ପ୍ରଥମ ସହିଦ 'ହଟ୍ଟେ ସିଂ'

ହଟ୍ଟେ ସିଂ ତୁମେ ହଟିଯାଇନାହଁ
ହଟି ଯାଇଅଛି ଫିରିଙ୍ଗ ଦଳ
ଅସୀମ ସାହସ ଦେଶ ପ୍ରୀତି ଆଗେ
ବିଫଳ ହୋଇଛି ତା' କଳବଳ ।
ଜନମ ଲଭିଲ ଜମିଦାର ବଂଶେ
ଦିନେହେଲେ ସୁଖ ଲଭିଲ ନାହିଁ
ଇଂରେଜ ବିରୁଦ୍ଧେ ସଂଗ୍ରାମ କରିଲ
ଭାରତ ମାତାର ମୁକତି ପାଇଁ ।
ପିତା ମାଧୋ ସିଂ ସହ ପରିବାର
ସଂଗ୍ରାମରେ ଦେଲେ ଝାସ
ଶୋଷଣ କଷଣ ନାନା ଅତ୍ୟାଚାର
କରିବା ପାଇଁ କି ନାସ
ପୁତ୍ରକନ୍ୟା ଆଉ ଜାମାତା ସହିତ
ସରବେ ହୋଇଲେ ଠୁଳ
ଦୁର୍ବାର ସଂଗ୍ରାମ ଗଢ଼ିଲେ ସଭିଏଁ
ହଲିଲା ଇଂରେଜ ମୂଳ ।
ବ୍ରିଟିଶ ବିରୋଧି ସ୍ୱାଧୀନତା ରଣେ
ଉତ୍ସର୍ଗ କରିଲେ ପ୍ରାଣ
ଅନ୍ୟାୟ ବିରୁଦ୍ଧେ ଲଢ଼ିବା ପାଇଁକି
ସର୍ବେକଲେ ମନ ଟାଣ ।
ଶେଷେ ଅତ୍ୟାଚାରୀ ବ୍ରିଟିଶ୍ ଶାସନ
ସମସ୍ତଙ୍କୁ ଧରିନେଲା
ଅନ୍ୟାୟ ଭାବରେ ବିନା ବିଚାରରେ
ଫାଶୀ ଖୁଣ୍ଟେ ଝୁଲାଇଲା

ଅନ୍ୟାୟ ଶୋଷଣ ଘୋର ଅତ୍ୟାଚାର
ଚାଲିଲା ରାଇଜ ସାରା
ମାଧୋ ସିଂ ଥିଲେ ଦୁର୍ବାର ସଂଗ୍ରାମୀ
ଦୁର୍ବାର ସଂଗ୍ରାମ ଧାରା
ବିଦ୍ରୋହ ଚାଲିଲା ସଂଗ୍ରାମ ଚାଲିଲା
ଠାଏ ଠାଏ ମେଳି ହେଲା
ଅଚଳ ଅଟଳ ବିଦ୍ରୋହର ସ୍ୱର
ଛାତି ଦୋହଲାଇ ଦେଲା
ପ୍ରବଳ ସଂଗ୍ରାମ ରକ୍ତପାତ ପରେ
ମାଧୋ ସିଂ ଧରା ହେଲେ
ବିନା ବିଚାରରେ ଧରିନେଇ ତାଙ୍କୁ
ଫାଶୀ ଖୁଣ୍ଟେ ଝୁଲାଇଲେ
ଦୁର୍ଦ୍ଦାନ୍ତ ବିଦ୍ରୋହୀ ହଟେ ସିଂ ଶେଷେ
ଧରିଲେ ବିଦ୍ରୋହ ଡୋରି
ଇଂରେଜ ଫଉଜ ବିଦ୍ରୋହୀ ଭିତରେ
ଖେଳିଲା ରକତ ହୋରି ।
ଲଢ଼ି ଲଢ଼ି ଶେଷ ନିରାଶ ହୋଇଲେ
ଆତ୍ମ ସମର୍ପଣ କଲେ
ଇଂରେଜ ଶାସକ କରିଲେ ବିଚାର
ସାତ ବର୍ଷ କରାହେଲେ
କାରାଦଣ୍ଡେ ଦଣ୍ଡି ଇଂରେଜ ଶାସକ
ମନରେ ନ ହେଲା ତୋଷ
ଶେଷେ କଳା ପାଣି ପାର ସେ କରିଲେ
ମନେ ବହି ଘୋର-ରୋଷ ।
କଳାପାଣି ପାରି ଆଣ୍ଡାମାନ ଗଲେ
ସେଲୁଲାର ବନ୍ଦୀଶାଳେ

ଘୋର ନିର୍ଯ୍ୟାତନା ଅସହ୍ୟ ଯନ୍ତ୍ରଣା
ନିରିମମ ଭାବେ ଚାଲେ
ବନ୍ଦୀଶାଳେ ରହି ଅତ୍ୟାଚାର ସହି
ଦିନୁ ଦିନ କ୍ଷୀଣ ହୋଇ
କେତେବା ସହିବେ ଅସହ୍ୟ ଯନ୍ତ୍ରଣା
(ଗଲେ) ଚିର ନିଦ୍ରାରେ ଶୋଇ
ସାରା ଜୀବନଟା ଲଢ଼େଇ କରିଲ
ବିନ୍ଦୁ ବିନ୍ଦୁ ରକ୍ତ ଦେଇ
ପ୍ରଥମ ଓଡ଼ିଆ କଳା ପାଣି ପାରେ
ସହିଦ ହୋଇଲ ଯାଇ ।
ରଖିଗଲ ଅମର କିରତି
ଧନ୍ୟ ହର୍ଛେସିଂ ତୁମେ
ଘେନ ହେ ପ୍ରଣତି ।



# ବିପ୍ଳବୀ ଆନନ୍ଦ ଜେନା

ଦୁଃଖିନୀ କନିକା ଏବେବି ଝୁରୁଛି
କାହିଁଗଲ ତୁମେ ଆନନ୍ଦ ଜେନା
ସରଗରେ ଥାଇ ହେ ମହା ବିପ୍ଳବୀ
ପ୍ରଣତି ଆମର କର ହେ ଘେନା
ବାପା ମା'ଙ୍କର ଅଲିଅଳୀ ପୁଅ
ସାତ ଭଉଣୀରେ ଗୋଟିଏ ଭାଇ
ପୁଅଟିଏ ପାଇ ମହାଖୁସି ହେଲେ
ଆନନ୍ଦର ସୀମା ରହିଲା ନାହିଁ ।
ଆନନ୍ଦେ ଅଧୀର ହୋଇଲେ ସରବେ
ପୂରଣ ହୋଇଲା ମନର କାମ
ବ୍ରତ ଉପବାସ ହୋଇଲା ସଫଳ
ଆନନ୍ଦେ ଆନନ୍ଦ ରଖିଲେ ନାମ
ବୟସ ବଢ଼ିଲା ମନରେ ଜାଗିଲା
ପାଠ ପଢ଼ିବାର ଅଦମ୍ୟ ନିଶା
ଗ୍ରାମ ବିଦ୍ୟାଳୟେ ଲେଖାଇଲେ ନାମ
ଗୁରୁ ଦେଖାଇଲେ ନୂତନ ଦିଶା
ଗାଁ ପାଠସାରି କଲିକତା ଗଲେ
ପଢ଼ିଲେ ସେଠାରେ ଅଧିକ ପାଠ
ମିଶିଲେ ସେଠାରେ ଗୁଣୀ ଜନ ସାଥେ
ଦେଖାଗଲା ତାଙ୍କୁ ନୂତନ ବାଟ
ବାପା ଖଗେଶ୍ୱର ସ୍ୱାଧୀନ ଚେତା ସେ,
ବଡ଼ ନିଷ୍ଠାବାନ ଆଦର୍ଶ ବାଦୀ
ଶୁଣାଇଲେ ତାଙ୍କୁ ଭାରତର ଗାଥା
ପୁରାଣ ଐତିହ୍ୟ ମହା ସଂସ୍କୃତି

ଗୁଣୀଜନ ଠାରୁ ଶୁଣିଲେ ସର୍ବଦା
ଦେଶର ସମସ୍ୟା ଦେଶର କଥା
ଶୁଣି ଶୁଣି ମନ ଅଥୟ ହୋଇଲା
ପାଇଲେ ମନରେ ଦାରୁଣ ବ୍ୟଥା
ମନରେ ଜାଗିଲା ଦେଶପ୍ରେମ ଭାବ
ଅସ୍ଥିର ତାଙ୍କର ହୋଇଲା ମନ
ସ୍ୱାଧୀନତା ରଣେ ଝାସ ଦେବାପାଇଁ
ଚଞ୍ଚଳ ହୋଇଲା ମନ ଓ ପ୍ରାଣ ।
ବଙ୍ଗ ଭଙ୍ଗ ଯୋଗୁ ଗଣ ଆନ୍ଦୋଳନ
ଚାଲିଲା ସେ କାଳେ ବଙ୍ଗଳା ସାରା
ସକ୍ରିୟ ହୋଇଲେ ଯୋଗ ତହିଁ ଦେଲେ
ଶେଷେ ଧରା ହୋଇ ଲଭିଲେ କାରା
କାରାରୁ ଫେରିଲେ ଗାଁକୁ ଆସିଲେ
ଦେଖିଲେ କନିକା ବାସୀଙ୍କ ଦଶା
ଅନ୍ୟାୟ ବିରୁଦ୍ଧେ ଗଣ ଆନ୍ଦୋଳନ
କରିବାକୁ ମନେ ବାନ୍ଧିଲା ବସା
ଇଂରେଜ ଇଙ୍ଗିତେ କନିକାର ରାଜା
ଶୋଷଣ କଷଣ ଚଳାଉଥିଲେ
କରପରେ କର ଭାରରେ ପ୍ରଜାଏ
ଚଳୁଥିଲେ ଆହା କି କଲବଲେ
ନାନା ଅତ୍ୟାଚାର ବେଠୀ ଓ ବେଗାରୀ
କନିକାର ନିତି ଦିନିଆ କଥା
ଲାଠିମାଡ଼ ଆଉ ଚାବୁକ ପ୍ରହାର
ଦେଉଥିଲା ତାଙ୍କୁ ଦାରୁଣ ବ୍ୟଥା
ଆନନ୍ଦଙ୍କ ମନ ଅସ୍ଥିର ହୋଇଲା
ପ୍ରଜାଙ୍କର ଶୁଣି ଦୁଃଖ କାହାଣୀ

ଆନ୍ଦୋଳିତ ହେଲା ମନଟି ତାଙ୍କର
ଦୁଃଖରେ ହୃଦୟ ହୋଇଲା ହାଣି ।
ପ୍ରଜା ଆନ୍ଦୋଳନ ଗଢ଼ି ସେ ତୋଳିଲେ
ଏକ ଯୁଟ ହେଲେ କନିକାବାସୀ
ଦଳଦଳ ହୋଇ ଯୋଗ ଦେଲେ ତହିଁ
ଭିନ୍ନ ଭିନ୍ନ ଗ୍ରାମ ସାହିରୁ ଆସି
ଶପଥ କରିଲେ ଖଟିବେନି ବେଠୀ
ଦେବେନି ଆଉ ସେ ଅନ୍ୟାୟକର
ଶୋଷଣ କଷଣ ବିରୁଦ୍ଧେ ଲଢ଼ିବେ
ସମର ଚାଲିବ କର ବା ମର
ଆନନ୍ଦ ଲେଖିଲେ ଦୁଃଖିନୀ କନିକା
ପଢ଼ି ଶୁଣି ଜାଗି ଉଠିଲେ ସବୁ
ଏମିତି ମରୁଛୁ ସେମିତି ମରିବୁ
ଆନ୍ଦୋଳନ ପାଇଁ ଜୀବନ ଦେବୁ ।
ଅତିଷ୍ଠ ହୋଇଲେ କନିକାର ରାଜା
ଆନ୍ଦୋଳନ ବଢ଼େ ଦିନକୁ ଦିନ
ପ୍ରଜା ଆନ୍ଦୋଳନ ଦବାଇ ଦେବାକୁ
ଚଳାଇଲେ କୁଟ କପଟ ହୀନ
ଆନନ୍ଦଙ୍କୁ ଦେଲେ ନାନା ପ୍ରଲୋଭନ
ଆନ୍ଦୋଳନ ପନ୍ଥା ଛାଡ଼ିବା ପାଇଁ
ଅଟଳ ଅଚଳ ରହିଲେ ଆନନ୍ଦ
କେବେ ହେଲେ ମନ ଦବିଲା ନାହିଁ ।
ନିରାଶ ହୋଇଲେ କନିକା ରାଜନ
ଶେଷେ ଲଗାଇଲେ ପୋଲିସ ବଳ
ଆନନ୍ଦଙ୍କୁ ଦେଲେ ନିସ୍ଠୁର ପ୍ରହାର
ଲଗାଇଲେ ପିଛା ଶାସନ କଳ ।

ତଥାପି ଆନନ୍ଦ ଦବିଗଲେ ନାହିଁ
ରାଜାଙ୍କ ବିରୁଦ୍ଧେ ଦେଲେ ସେ ନାରା
ଶୋଷଣ କଷଣ ବିରୁଦ୍ଧେ ଲଢ଼ିବା
ଅନ୍ୟାୟ ବିରୁଦ୍ଧେ ଲଭିବା କାରା
ସ୍ୱାଧୀନତା ପାଇଁ ଲଢ଼ିବା ପାଇଁକି
କନିକା ରାଜାଙ୍କୁ ଚେତାଇ ଦେଲେ
ଅନ୍ୟାୟକର ଉଠାଇ ଦେବାକୁ
ସବୁ ମିଳି ମିଶି ଶପଥ ନେଲେ
ଲଢ଼େଇ ଲଢ଼େଇ ଚାଲିବ ସର୍ବଦା
ହେବାଯାଏ ସବୁ ଦାବୀ ପୂରଣ
ଆଇନ କାନୁନ ମାନିବେ ନାହିଁ ସେ
ହେଲେ ହେଇ ଯାଉ ଅବା ମରଣ
ଏକାଳେ ପଡ଼ିଲା ଦୁର୍ଭିକ୍ଷ ଘୋର
ଖାଇବାକୁ ଲୋକେ ପାଇଲେ ନାହିଁ
ପେଟ ବିକଳରେ ଅଖାଦ୍ୟ ଖାଇଲେ
ଦୁଃଖରେ ହୋଇଲେ କି ହାଇଁପାଇଁ ।
ମାତ୍ର ସରକାର କିଛି ନ କରିଲା
ନଶୁଣିଲା କିଛି ହାରି ଗୁହାରି
ଓଲଟା ଆଦାୟ କରିଲା ଖଜଣା
ନିର୍ଦ୍ଦୟ ଭାବରେ ଚାବୁକ ମାରି ।
ଆନନ୍ଦ କହିଲେ ରାଜାଙ୍କ ଆଗରେ
କନିକା ବାସୀଙ୍କ ଦୁଃଖର କଥା
ନ ଶୁଣିଲେ ରାଜା କଲେ ନାହିଁ କିଛି
ବିଫଳ ହୋଇଲା ସେ କଥାବାର୍ତ୍ତା
ଆନନ୍ଦ ଭେଟିଲେ ଉତ୍କଳ ମଣିଙ୍କୁ
ଶୁଣାଇଲେ ସବୁ ଦୁଃଖ କାହାଣୀ

ସେବା ଅବତାର ତ୍ୟାଗୀ ଗୋପବନ୍ଧୁ
ଶୁଣି ତାଙ୍କ ହୃଦ ହୋଇଲା ହାଣି ।
ଆଳିରେ ଖୋଲିଲେ ବିତରଣ କେନ୍ଦ୍ର
କଂଗ୍ରେସ କର୍ମୀଙ୍କ ସାହାଯ୍ୟ ପାଇ
ମୁଠେ ଖୁଦ ପାଇଁ କ୍ଷୁଧାର୍ତ୍ତ ଜନତା
ଦଳଦଳ ହୋଇ ଆସିଲେ ଧାଇଁ ।
ଆନନ୍ଦଙ୍କ ତ୍ୟାଗ ଦେଖିଣ ଜନତା
ପ୍ରଶଂସା କରିଲେ ଭୁରି କି ଭୁରି
ଗୋବନ୍ଧୁ ସଙ୍ଗେ ଆନନ୍ଦଙ୍କ ସେବା
ଦେଖି ରାଇଜରେ ପଡ଼ିଲା ହୁରି ।
ସଭିଏଁ ପଢ଼ିଲେ ଦୁଃଖିନୀ କନିକା
ଜାଣିଲେ ସଭିଏଁ ରାଜାଙ୍କ କଥା
ଅତ୍ୟାଚାର କଥା ଜାଣିଲେ ସମସ୍ତେ
ପାଇଲେ ମନରେ ଦାରୁଣ ବ୍ୟଥା ।
ଅତ୍ୟାଚାରୀ ରାଜା ପ୍ରମାଦ ଗଣିଲେ
ଇଂରେଜ ସାହାଯ୍ୟ ଲୋଡ଼ିଲେ ଯାଇ
ପୋଲିସ ଫଉଜ ଅଣାଇଲେ ଦେଶେ
ବିଦ୍ରୋହ ଦମନ କରିବା ପାଇଁ ।
ନିଷିଦ୍ଧ ହୋଇଲା ଦୁଃଖିନୀ କନିକା
ବେଆଇନ ହେଲା ପୁସ୍ତକ କିଣା
ଲୋକ ମୁଖେ କିନ୍ତୁ ପ୍ରସାରିତ ହେଲା
ଦୁଃଖିନୀର ବାର୍ତ୍ତା ପୁସ୍ତକ ବିନା
ପତ୍ରପୁରଠାରେ ପ୍ରଜା ମେଳି ହେଲା
ଆନନ୍ଦ ତହିଁରେ ଭାଷଣ ଦେଲେ
ମେଳି ଭଙ୍ଗ ପାଇଁ ପୋଲିସ ଗୁଳିରେ
ଦୁଇଜଣ ପ୍ରଜା ନିହତ ହେଲେ

ଘନ ଅନ୍ଧାରେ ପହଁରି ପହଁରି
ଆନନ୍ଦ ଚାଲିଲେ ନଇଁ ସେ ପାରି
ଆଳିରେ ପହଞ୍ଚି ଚେଷ୍ଟା ଚଳାଇଲେ
କିପରି ବିଦ୍ରୋହ ରଖିବେ ଜାରି ।
ଗିରଫ ହୋଇଲେ ଆନନ୍ଦ ଚନ୍ଦ୍ର ଯେ
ବାଜ୍ୟାପ୍ତ ହୋଇଲା ସମସ୍ତ ଜମି
ନିର୍ବାସିତ ହେଲେ କନିକା ରାଇଜୁ
ତଥାପି ବିଦ୍ରୋହ ନ ଗଲା ଥମି ।
ଓଡ଼ିଶାର ବହୁ ଗୁଣି ଜନ ମାନେ
ଆସିଲେ ରାଜାଙ୍କୁ ଭେଟିବା ପାଇଁ
ବହୁ ଯୁକ୍ତିତର୍କ କରିଲେ ସେମାନେ
ତଥାପି ରାଜନ ଶୁଣିଲେ ନାହିଁ ।
ବିଭିନ୍ନ ଭାଷାରେ ଦୁଃଖିନୀ କନିକା
ଅନୁଦିତ ହେଲା ପଢ଼ିଲେ ସର୍ବେ
ବାପୁଜୀ ସମେତ ବହୁ ଜନନେତା
ଆନନ୍ଦଙ୍କୁ ଧନ୍ୟ କହିଲେ ଗର୍ବେ,
ଆନନ୍ଦ ଭେଟିଲେ ଜାତିର ପିତାଙ୍କୁ
ତିନିମାସ କାଳ ରହିଲେ ପାଶେ
ଆନ୍ଦୋଳନ ଧାରା ଚଳାଇବା ପାଇଁ
ଆଶିଷ ତାଙ୍କର ପାଇବା ଆଶେ ।
ଗାନ୍ଧିଜୀଙ୍କ ଠାରୁ ପ୍ରେରଣା ପାଇଲେ
ସ୍ୱାଧୀନତା ରଣେ ଦେଲେ ସେ ଝାସ
ଭାରତ ମାତାର ସ୍ୱାଧୀନତା ପାଇଁ
ମନରେ ଜାଣିଲା ଦୁର୍ବାର ଆଶ
ଲୁଣ ମରା ଆଉ ଅସହଯୋଗରେ
ଭାଗନେଲେ ସେହି ନ କରି ଡେରି

ବହୁ ଆନ୍ଦୋଳନେ ଯୋଗ ଦେଇ ପୁଣି
କନିକାକୁ ଶେଷେ ଆସିଲେ ଫେରି ।
ଶେଷରେ ଇଂରେଜ ହାର ମାନିଗଲେ
ସ୍ୱାଧୀନ ହୋଇଲା ଆମରି ଦେଶ
ଆନନ୍ଦ ଉଲ୍ଲାସେ ମାତିଲେ ସରବେ
ଶୋଷଣ କଷଣ ହୋଇଲା ଶେଷ ।
ନିର୍ବାଚନ ହେଲା ଆମରି ଦେଶରେ
କନିକା ରାଜନ ହୋଇଲେ ପ୍ରାର୍ଥୀ
ରାଜାଙ୍କ ବିରୁଦ୍ଧେ ପ୍ରଚାର କରିଲେ
ଆନନ୍ଦ ନ ମାନି ଦିବସ ରାତ୍ରି
କନିକା ରାଜନ ପରାଜିତ ହେଲେ
ଆନନ୍ଦଙ୍କ ପ୍ରାର୍ଥୀ ବିଜୟୀ ହେଲେ
ଆନନ୍ଦ ଲହରୀ ଖେଳିଲା ରାଇଜେ
ଆନନ୍ଦଙ୍କୁ ସର୍ବେ ବାହା ବା ଦେଲେ
ପରାଜୟ ଆଉ ଅପମାନ ଗ୍ଲାନି
ଆନ୍ଦୋଳିତ କଲା ରାଜାଙ୍କ ମନ
ପ୍ରତିଶୋଧ ପାଇଁ ସ୍ଥିର କଲେ ରାଜା
ଡକାଇଲେ ନିଜ ବିଶ୍ୱସ୍ତ ଜନ
ଆନନ୍ଦଙ୍କ ପାଇଁ ପରାଜୟ ହେଲା
ସର୍ବେ ମିଳିମିଶି ସ୍ଥିର କରିଲେ
କ୍ରୋଧରେ ଜର୍ଜର ହୋଇଲେ ରାଜନ
ପ୍ରତିଶୋଧ ପାଇଁ ଯୋଜନା କଲେ ।
ଦୁଇଜଣ ଲୋକ ପେଷିଲେ ରାଜନ
ଛଳନାର ମନ୍ତ୍ରଶିଖାଇ ଦେଇ
ଆନନ୍ଦଙ୍କୁ ଯାଇ ଭେଟିଲେ ସେମାନେ
ଆଖିରୁ ଛଳନା ଲୁହ ବୁହାଇ

କାନ୍ଦି କାନ୍ଦି ସବୁ କହିଲେ ତାହାଙ୍କୁ
ରାଜାଙ୍କର ଅତ୍ୟାଚାର କାହାଣୀ
ଘରଦ୍ୱାର ନାହିଁ ଖାଇବାକୁ ନାହିଁ
ଦୁଃଖରେ ହୃଦୟ ହେଉଛି ହାଣି
ସରଳ ବିଶ୍ୱାସୀ ଆନନ୍ଦଙ୍କ ହୃଦ
ତାଙ୍କ ଦୁଃଖ ସହି ପାରିଲା ନାହିଁ
ସରଳ ମନରେ ଅତି ଆଦରରେ
ସ୍ଥାନ ଦେଲେ ପାଖେ ରହିବା ପାଇଁ
ପାଖେ ପାଖେ ରହି ବିଶ୍ୱାସ ଜନ୍ମାଇ
ଆନନ୍ଦଙ୍କ ମନ ଦେଲେ ସେ ମୋହି
ସଦା ସରବଦା ସୁଯୋଗ ଖୋଜିଲେ
ରାଜାଙ୍କ ଆଦେଶ ପାଳିବା ପାଇଁ ।
ବିଷ ମିଶାଇଲେ ଖାଇବା ଦରବେ
ପରଶିଲେ ନେଇ ଖାଇବା ଥାଳି
ଆନନ୍ଦ ମନରେ ଆନନ୍ଦ ଖାଇଲେ
ସରଳ ମନରେ କିଛି ନ ଭାଳି ।
ଧୀରେ ଧୀରେ ବିଷ ସଞ୍ଚରିଲା ଦେହେ
ଚିରନିଦ୍ରାରେ ସେ ପଡ଼ିଲେ ଶୋଇ
ବିଶ୍ୱାସରେ ବିଷ ଦେଇ ଗଲେ ଦୁହିଁ
କେହି ତାଙ୍କ ପତ୍ତା ପାଇଲେ ନାହିଁ
ଧନ୍ୟ ଧନ୍ୟ ତୁମେ ହେ ମହା ବିପ୍ଳବୀ
ରଖିଗଲ ତୁମେ ମହା ବିରତି
ତୁମରି ଆଦର୍ଶ ତୁମରି ପ୍ରେରଣା
ଭରୁ ପ୍ରତି ହୃଦେ ଦେଶ ପୀରତି ।



# ଉତ୍କଳର ମା' ରମାଦେବୀ

ଉତ୍କଳ ଜନନୀ ବଡ଼ ଗରିବିଣୀ
ତୁମପରି କନ୍ୟା ପାଇ
ସେବାର ମୂରତି ତୁମେ ରମାଦେବୀ
ତା'ର ପଟାନ୍ତର ନାହିଁ ।
ଜମିଦାର ଘରେ ଜନମ ଲଭିଲ
ଭୋଗ ବିଳାସକୁ ଛାଡ଼ି
ସରଳ ଜୀବନ ଯାପନ କରିଲ
ସେବା କାର୍ଯ୍ୟେ ଗଲା ମାଡ଼ି
ମଧୁବାବୁ ଥିଲେ ତୁମ ବଡ଼ ବାପା
ତାଙ୍କଠୁ ପ୍ରେରଣା ନେଇ
ଦେଶ ପାଇଁ ପ୍ରାଣ ଉତ୍ସର୍ଗ କରିଲ
ସବୁ ନିଉଛାଳି ଦେଇ ।
ଗୋପାଳ ବଲ୍ଲଭ ତୁମ ନିଜ ପିତା
ବସନ୍ତ କୁମାରୀ ମାତା
ପ୍ରତିଟି ସନ୍ଧ୍ୟାରେ କହୁଥିଲେ ସଦା
ଭାରତର ପୁଣ୍ୟ ଗାଥା
ଶୁଣାଉଥିଲେ ସେ ସ୍ୱାଧୀନତା ରଣ
କିପରି ଚାଲିଛି ଦେଶେ
ସ୍ୱାଧୀନତା ରଣେ ଝାସ ଦେବାପାଇଁ
ମନରେ ଚିନ୍ତିଲ ଶେଷେ ।
ଉତ୍କଳ ମଣିଙ୍କ ଭାଷଣ ଶୁଣିଲ
କାଠଯୋଡ଼ି କୂଳେ ଯାଇ
ମନରେ ଜାଗିଲା ପ୍ରବଳ ଆଗ୍ରହ
ସଂଗ୍ରାମରେ ଯୋଗ ପାଇଁ ।

ଗାନ୍ଧିଜୀଙ୍କ ସହ ସାକ୍ଷାତ ହୋଇଲା
ବିନୋଦ ବିହାରୀ ଠାରେ
ତାଙ୍କରି ଦର୍ଶନେ ପୁଲକ ଜାଗିଲା
ଉତ୍ସାହିତ ହେଲ ବାରେ ।
ବିଳାସ ତେଜିଲ ଖଦଡ଼ ପିନ୍ଧିଲ
ଅଳକା ଆଶ୍ରମେ ରହି
ସ୍ୱାମୀ ପିଲାସଙ୍ଗେ ଆନନ୍ଦେ ରହିଲ
ସବୁ ଦୁଃଖ କଷ୍ଟ ସହି ।
ବାପୁଙ୍କ ଡାକରା ଲୁଣମରା ପାଇଁ
ଇଞ୍ଚୁଡ଼ିକୁ ଚାଲିଗଲ
ଶ୍ରୀ ଜଙ୍ଗଠାରେ ଲୁଣ ମରାକାମ
ନିର୍ଭୟେ ଆରମ୍ଭ କଲ ।
(ପୂର୍ଣ୍ଣ) ସ୍ୱରାଜ ଦିବସ ପାଳନ ପାଇଁକି
କଂଗ୍ରେସ ଡାକରା ଦେଲା
ଲିଙ୍ଗରାଜ ମିଶ୍ର ମାଳତୀ ଦେବୀଙ୍କୁ
ପୋଲିସ ଗିରଫ କଲା
ତୁମେ ନେଇଥିଲ ଆନ୍ଦୋଳନ ଭାର
ନିର୍ଭୟରେ ଚଳାଇଲ
ତୁମର ଦକ୍ଷତା ନିର୍ଭିକତା ବଳେ
ସଭିଙ୍କୁ ଆଶ୍ଚର୍ଯ୍ୟ କଲ ।
ନଭେମ୍ବର ମାସ ଛଅ ତାରିଖରେ
କଟକରୁ ବନ୍ଦୀ କରି
ଭାଗଲପୁରର ଜେଲରେ ରଖିଲା
ପୋଲିସ୍ ନ କରି ଡେରି
ଜେଲରୁ ଫେରିଲ କଟକ ଆସିଲ
ସମ୍ବର୍ଦ୍ଧନା ଦିଆଗଲା

କାଠଯୋଡ଼ି ନଦୀ ବାଲିପଠା ଠାରେ
ସଭା ଆୟୋଜନ ହେଲା
ବାନର ସେନାଙ୍କ ଅତ୍ୟାଚାର କଥା
ସଭାରେ ବର୍ଣ୍ଣନା କଲ ।
ପରେ ପରେ ଯାଇ ମହିଳା ସଭାରେ
ଆସି ଯୋଗଦାନ କଲ ।
ହରିଜନ ସେବା ସମାଜର ସେବା
କାର୍ଯ୍ୟରେ ଲଗାଇ ମନ
ଭୁଦାନ କାର୍ଯ୍ୟରେ ସମୟ କାଟିଲ
ସେବାକଲ ଦୁସ୍ଥ ଜନ
ଗାନ୍ଧିଜୀଙ୍କ ସଙ୍ଗେ ପଦଯାତ୍ରା କଲ
ଅସ୍ପୃଶ୍ୟତା ଦୂର ପାଇଁ
ଗାନ୍ଧିଜୀଙ୍କ ବାର୍ତ୍ତା ପ୍ରଚାର କରିଲ
ଗ୍ରାମେ ଗ୍ରାମେ ବୁଲି ଯାଇଁ ।
ବନ୍ୟା ପ୍ରପୀଡ଼ିତ ବରୀକୁ ବାଛିଲ
ନିଜ କର୍ମ କ୍ଷେତ୍ର ବୋଲି
ଆଶ୍ରମ ସ୍ଥାପିଲ ସେବା କାର୍ଯ୍ୟ କଲ
ନିଜର ଅନ୍ତର ଖୋଲି
ଉଣେଇଶ ଶହ ପଞ୍ଚାଅଶି ମସୀହା
ଜୁଲାଇ ଏକୋଇଶ ଦିନ
ସରଗେ ଚାଲିଲ ଛାଡ଼ି ସମସ୍ତଙ୍କୁ
କନ୍ଦାଇ ସକଳ ଜନ
ରହିଗଲ ତୁମେ ପ୍ରତିଟି ହୃଦୟେ
ତୁମେ ଉତ୍କଳର ମା’
ପ୍ରଣାମ କରୁଛୁ ତୁମକୁ ହେ ଦେବୀ
ସୁମରି ତୁମରି ନାଁ ।



# ଋଷି ପ୍ରାଣ ନବକୃଷ୍ଣ ଚୌଧୁରୀ

ନବକୃଷ୍ଣ ତୁମେ ନବୀନ ଉତ୍ସାହ
ନବ ଉନ୍ମାଦନା ନୂତନ ପ୍ରେରଣା
ଭରି ଚାଲିଗଲ ପ୍ରତିଟି ମଣିଷ ମନେ
ତୁମ ନିଷ୍କପଟ ସରଳ ହୃଦୟ
ଉଦାରତା ଆଉଦେଶ ପ୍ରୀତି କଥା
ସ୍ମରୁଥିବେ ଜନ ଗଣେ ।
ଗରୀବ କୃଷକ ଖଟିଖିଆ ପାଇଁ
କାନ୍ଦୁଥିଲା ତୁମ ପ୍ରାଣ
ତାଙ୍କରି ଉନ୍ନତି ପାଇଁ କାର୍ଯ୍ୟ କରି ତାଙ୍କୁ
ଦୁଃଖୁ କଲ ପରିତ୍ରାଣ
ସାବରମତିର ଆଶ୍ରମେ କାଟିଲ
ବାପୁ ସଙ୍ଗେ କିଛି କାଳ
ନବ ଉନ୍ମାଦନା ନବୀନ ପ୍ରେରଣା
ପାଇ ତାଙ୍କଠାରୁ ଜୀବନ କାଟିଲ
ସୁଖ ଦୁଃଖେ ଦେଇ ତାଳ,
ଶାନ୍ତି ନିକେତନେ ରହି କିଛି ଦିନ
ଶିଖିଲ ଅନେକ କାମ
ଅଲକା ଆଶ୍ରମେ ରହି କିଛିକାଳ
କାର୍ଯ୍ୟ କରିଗଲ
ଢାଳି ଦେଇ ପ୍ରାଣ ମନ ।
ବଣର ମାଳତୀ ତୋଳି ଆଣିଥିଲ
ସୁବାସରେ ଗଲା ଭରି
କୁସୁମିତ ହେଲା ତୁମ ଚଲାପଥ
କିଏ ହେବ ତାଙ୍କ ସରି ।
ଭାଇ ଗୋପବନ୍ଧୁ ସଙ୍ଗେ ରମାଦେବୀ
ମାଳତୀ ସାଥୀରେ ରହି

ନିରଳସ ଭାବେ ଜୀବନ କାଟିଲ
ସବୁ ଦୁଃଖ କଷ୍ଟ ସହି
ପିତା ମାତାଙ୍କର ପ୍ରେରଣା ପାଇଲ
ସ୍ୱାଧୀନତା ରଣେ ସର୍ବେ ଝାସ ଦେଲ
ବହୁବାର କାରାଗଲ
ଦେଶ ସେବା ଆଉ ଗରୀବଙ୍କ ପାଇଁ
ଜୀବନ ଉତ୍ସର୍ଗ କଲ
ମୁଖ୍ୟମନ୍ତ୍ରୀ ହେଲ ଓଡ଼ିଶା ରାଇଜେ
ଶାସନ ଡୋରିକି ହାତରେ ଧରିଲ
ବହୁ ଗୁଣି ମାନି ସଜ୍ଜନ ମାନଙ୍କୁ
ମନ୍ତ୍ରୀ ମଣ୍ଡଳରେ ରଖିଥିଲ ସାଥେ
ନିର୍ମଳ ଶାସନ ଦେଲ
କ୍ଷମତାର ମୋହ ନ ଥିଲା ତୁମର
ଶେଷରେ ଆନନ୍ଦେ ବିଦାୟ ନେଲ ।
ତରକୁନ୍ଦ ଜମି ବିକ୍ରୟ କରିଲ
ଅନୁଗୁଳଠାରେ ଆଶ୍ରମ ଥାପିଲ
ବାଜି ରାଉତଙ୍କ ନାମେ
ଋଷିପ୍ରାଣ ତୁମେ ମାଳତିଙ୍କ ସଙ୍ଗେ
ସେବାକରି ଶେଷେ
ଚାଲିଗଲ ଆର ଧାମେ ।
ଧନ୍ୟ ଗୋପବନ୍ଧୁ ଧନ୍ୟ ନବକୃଷ୍ଣ
ଧନ୍ୟ ତୁମ ମାତା ପିତା
ପରିବାର ସହ ଦରିଦ୍ର ସେବାରେ
ଜୀବନ ବିତାଇ
ହୋଇଲ ଜଗତ ଜିତା
ପ୍ରଣାମ ଦେ୍ୱ ସର୍ବେ ନିଅ
ସରଗରେ ଥାଇ ସବୁରି ଉପରେ
ଆଶୀର୍ବାଦ ଢାଳିଦିଅ ।



# ତୁମେ ତ ମରଣ ଜୟୀ

''ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।''

ମୁଣ୍ଡା ଜାତିର ଦେବତା ତୁମେ ହେ
ବିର୍ସାମୁଣ୍ଡା, କେବେ ମରିନାହଁ ତୁମେ
ତୁମେ ତ ମରଣ ଜୟୀ ।

ନିଘଞ୍ଚ ଜଙ୍ଗଲେ ଜନମ ଲଭିଲ
ପ୍ରକୃତିର କୋଳେ ଜୀବନ କାଟିଲ
ନିର୍ଭିକ ତୁମେ ଦୁର୍ବାର ତୁମେ
କାନେ କାନେ ଗଲ କହି
ଆଗେଇ ଚାଲରେ ଆଗେଇ ଚାଲ
ଭୟ ନାହିଁ ଭୟ ନାହିଁ
ତୁମେ ତ ମରଣ ଜୀୟୀ ।

ତୁମ ବଇଁଶୀର ସୁମଧୁର ସ୍ୱନ
ତୁମ ଛେଳି ଜଗା ମନ୍ଦ ସମିରଣ
ପ୍ରତିଟି ମନରେ ଆଣେ ଶିହରଣ
ସବୁରି କାନରେ ତୁମେ ଗଲ କହି
ଭୟ ନାହିଁ ଭୟ ନାହିଁ
ତୁମେତ ମରଣ ଜୟୀ ।

ସମାଜ ସେବାକୁ ଆଦରିଲ ତୁମେ
ସମାଜର ସେବା ଭଗବତ୍ ସେବା ବୋଲି
ଦୃଢ଼ ସଂଗଠନ ଗଠନ କରିଲ
ମନପ୍ରାଣ ଦେଇ ସେବାରେ ମଜ୍ଜିଲ

କହିଲ ହୃଦୟ ଖୋଲି
ଆଗେଇ ଚାଲରେ ଆଗେଇ ଚାଲ
ଭୟ ନାହିଁ ଭୟ ନାହିଁ
ତୁମେତ ମରଣ ଜୟୀ ।

ଦୁର୍ଦ୍ଧର୍ଷ ଇଂରେଜ ବିରୁଦ୍ଧେ ଲଢ଼ିଲ
ବ୍ରିଟିଶ୍ ଶାସନ ଦୋହଲାଇ ଦେଲ
ଶୋଷଣ କଷଣ ବେଠି ଓ ବେଗାରି
ଅନ୍ୟାୟ ଟିକସ ଜମି କେଳେଙ୍କାରି
ବିରୁଦ୍ଧେ ତୋଳିଲ ଦୁର୍ବାର ସଂଗ୍ରାମ
ବ୍ରିଟିଶ୍ ଥରିଲା ଶୁଣି ତୁମ ନାମ
ବଜ୍ର ଗମ୍ଭୀର କଣ୍ଠରେ କହିଲ
ଲଢ଼େଇ କରରେ ଲଢ଼େଇ କର
ଭୟ ନ କରରେ ଭୟ ନକର
ଆଗେଇ ଆସରେ ଭାଇ
ତୁମେତ ମରଣ ଜୟୀ ।

ମୂକ ସାକ୍ଷୀ ଅଛି ତୋମ୍ଭାରୀ ପାହାଡ଼
ମୁଣ୍ଡା ବିଦ୍ରୋହୀଙ୍କ ଅଛି ମାଂସ ହାଡ଼
ଶହ ଶହ ମୁଣ୍ଡା ଦେଲେ ପ୍ରାଣବଳୀ
ଷ୍ଟ୍ରିଟ୍ ଫିଲ୍ଡ୍ ତହିଁ ଚଳାଇଲା ଗୁଳି
ନିର୍ଭୀକ ଭାବରେ ଦେଲେ ଛାତିପାତି
ଦୁର୍ଦ୍ଧର୍ଷ ସଂଗ୍ରାମୀ ଯୁବକ ଯୁବତୀ
ନୁଆଁଇଲେ ନାହିଁ ଶିର
ମରଣ ତାହାଙ୍କୁ ନେଇଗଲ ସିନା
ପ୍ରତିଟି ହୃଦୟେ ରହିଲେ ଅମର ହୋଇ
ସେମାନେ ମରଣ ଜୟୀ ।

ସାରା ଜୀବନଟା ସଂଗ୍ରାମେ କାଟିଲ
ସଂକଳ୍ପ ପଥୁ କେବେ ନ ହଟିଲ
ଶୋଷଣ କଷଣ ଅନ୍ୟାୟ ବିରୁଦ୍ଧେ ଲଢ଼େଇ କରିଲ
ପ୍ରତି ମଣିଷର ହୃଦୟ ଜିଣିଲ
ତୁମ ପାଶେ ମୃତ୍ୟୁ ହାର ଯେ ମାନିଲା
ରହିଲ ଅମର ହୋଇ
ତୁମେ ତ ମରଣ ଜୟୀ ।

●

# ବିପ୍ଳବୀ ଧରଣୀଧର

କେନ୍ଦୁଝର ମାଟି ଏବେବି ଝୁରଇ
ବିପ୍ଳବୀ ଧରଣୀଧର
କାହିଁଗଲ ତୁମେ ଚାଲି
ତୁମ ଭୂୟାଁ ମେଳି ମନରେ ପଡୁଛି
ସଦା ସରବଦା ମନରେ ଭାଷୁଛି
ଝୁରୁଛୁ ସଭିଏଁ ଖାଲି ।

ଇଂରେଜ ଶାସନ ଚାଲୁଥିଲା ଦେଶେ
ନାମ ମାତ୍ର ଥିଲେ ରାଜା
ତୋଷାମୋଦକରି ରାଜୁତି କରନ୍ତି
ବଜାଇ ଇଂରେଜ ବାଜା
ଇଂରେଜ ନିର୍ଦ୍ଦେଶେ ଚାଲୁଥିଲେ ରାଜା
ଚଳାଇ ଶୋଷଣ ନୀତି
ଅନ୍ୟାୟ କଷଣେ ପେଷି ହୋଇ ପ୍ରଜା
ଦିନ ଯାଉଥିଲା ବିତି ।
ଅନ୍ଧକାର ମଧ୍ୟେ ଆଲୋକର ଶିଖା
ଦେଖାଇଲ ତୁମେ ନୂତନ ସୂର୍ଯ୍ୟରୂପେ
ବିପ୍ଳବର ବହ୍ନି ଜାଳି ସବୁ ହୃଦେ
ଉଦ୍ଧାର କରିଲ
ସଢୁଥିଲେ ଅନ୍ଧକୂପେ ।
ଅନ୍ୟାୟ ଅନୀତି ଶୋଷଣ କଷଣ
ବଢୁଥିଲା ଦିନ ଦିନ
ନିଷ୍ପେଷିତ ହୋଇ ଜୀବନ ପ୍ରଦୀପ
ଜଳୁଥିଲା ହୋଇ କ୍ଷୀଣ ।
ଭୂୟାଁ ଜୁଆଙ୍ଗ କନ୍ଧ କୋହ୍ଲ ଆଦି

ସଭିଙ୍କୁ ଏକାଠି କଲ
ସମସ୍ତଙ୍କ ମନେ ଜାଳି ଦେଇ ନିଆଁ
ବିଦ୍ରୋହ ନେତୃତ୍ୱ ନେଲ ।
ରାଜାଙ୍କ ବିରୁଦ୍ଧେ ବିଦ୍ରୋହ ଚାଲିଲା
କେନ୍ଦୁଝରର ବାସୀ ଉଠିଲେ ମାତି
ରାଇସୁଆଁଠାରେ ସଭା ଆରମ୍ଭିଲେ
ରକତ ସଭିଙ୍କ ଉଠିଲା ତାତି ।
ଧରଣୀଙ୍କ କଥା ଶୁଣିଲେ ସଭିଏଁ
ସତେକି ବରଷା ହୋଇଲା ନିଆଁ
ବିଦ୍ରୋହର ବହ୍ନି ଜଳିଲା ସର୍ବତ୍ର
ଦେଖିଲେ ଭୟରେ ଥରିଲା ହିଆ ।
ଶହ ଶହ ଲୋକ ଝାସ ଦେଲେ ଆସି
ନିଜ ନିଜ କର୍ମ ଜଞ୍ଜାଳ ଛାଡ଼ି
ନିର୍ଭୀକ ଭାବରେ ଅସ୍ତ୍ରଶସ୍ତ୍ର ଧରି
ରାଜବାଟୀ ଆଡ଼େ ଗଲେ ସେ ମାଡ଼ି
ଅତ୍ୟାଚାରୀକୁ ଦଣ୍ଡଦେବା ପାଇଁ
ସର୍ବେ ଏକସ୍ୱରେ ଶପଥ ନେଲେ
ଶୋଷଣ କଷଣ ହଟାଇବା ପାଇଁ
ସରବେ ଯେପରି ବ୍ୟାକୁଳ ହେଲେ ।
ଗୁପ୍ତବାଟ ଦେଇ ପଳାଇଲେ ରାଜା
କେହି ତାଙ୍କ ଦେଖା ପାଇଲେ ନାହିଁ ।
ଚିହିଙ୍କି ଉଠିଲେ ବିଦ୍ରୋହୀ ଜନତା
ଜେଲ୍‌ର ଫାଟକ ଭାଙ୍ଗିଲେ ଯାଇ ।
ମୁକ୍ତ କରିଦେଲେ ସବୁକଇଦୀଙ୍କୁ
ବିଦ୍ରୋହ ବଢ଼ିଲାବେଳକୁ ବେଳ
ଡରିଗଲେ ରାଜା ଇଂରେଜ ସହିତ

ଭାବିଲେ ଏଥର ସରିଲା କାଳ ।
ବସନ୍ତରା ଘାଟୀ ଠାରେ ଯୁଦ୍ଧ ହେଲା
ରାଜ କର୍ମଚାରୀ ବିଦ୍ରୋହୀ ସହ
ବନ୍ଦୀ ହୋଇଲେ ରାଜ କର୍ମଚାରୀ
ଜୀବନ ହୋଇଲା ଦୁର୍ବିସହ ।
ମୁକୁଟ ବିହୀନ ନରପତି ହେଲେ
ମହାନ୍ ବିପ୍ଳବୀ ଧରଣୀଧର
କେନ୍ଦୁଝର ବାସୀ ଆଶୀର୍ବାଦ ଦେଲେ
ଧରଣୀ ଧରିଲେ ଶାସନ ଡୋର ।
ରାଇସୁଆଁଠାରେ ରାଜଧାନୀ କରି
ଧରଣୀ ରଚିଲେ ନୂଆ ଯୋଜନା
ଦୁଃଖୀ ରଙ୍କିଙ୍କର ଉପକାର କଲେ
ମନରେ ନ ରଖି କିଛି ଶୋଚନା ।
ଉତ୍କ୍ଷିପ୍ତ ମେଳିଆ ଉପାୟ ରଚିଲେ
ରାଜବାଟୀ ଧ୍ୱଂସ କରିବା ପାଇଁ
ଚତୁର ଦେୱାନ ଫକୀର ମୋହନ
ଏ କଥାକୁ ସହି ପାରିଲେ ନାହିଁ ।
ଆନନ୍ଦ ପୁରକୁ ପଠାଇଲେ ଚିଠି
ଚତୁରେ ଫଉଜ ମଗାଇ ଦେଲେ
ଯଥା ସମୟରେ ଇଂରେଜ ଫଉଜ
ରାଜବାଟୀଆସି ଦଖଲ କଲେ ।
ବିଦ୍ରୋହୀମାନଙ୍କୁ ଧରିବା ପାଇକି
ଫଉଜ ଖୋଜିଲେ ଘରକୁ ଘର
ଶେଷରେ ବିପ୍ଳବୀ ଧରାପଡ଼ିଗଲେ
ବନ୍ଦୀ ହୋଇଲେ ଧରଣୀଧର
ଆନନ୍ଦ ପୁରରେ ବିଚାର ଚାଲିଲା

ଧରଣୀ ଲଭିଲେ ଜେଲ୍ ଦଣ୍ଡ
ତଥାପି ଧରଣୀ ନ ହୋଇଲେ ଦୁଃଖୀ
ନୁଆଁଇଲେ ନାହିଁ ଉନ୍ନତ ମୁଣ୍ଡ ।
କାରାଗାରେ ରହି ଧରଣୀ ଜାଣିଲେ
ଅନ୍ୟାୟ ଅନୀତି ଯାଇଛି ସରି
ଆନନ୍ଦେ ଅଛନ୍ତି କେନ୍ଦୁଝରବାସୀ
ନ କାଟନ୍ତି ଦିନ ପୁରୁବ ପରି ।
ସାତ ବର୍ଷପରେ କାରାରୁ ଫେରିଲେ
ବଦଳିଲା ତାଙ୍କ ଜୀବନ ଗତି
ବିପ୍ଳବୀ ଜୀବନ ହୋଇଗଲା ଶେଷ
ଆଧ୍ୟାତ୍ମ ପଥରେ ରହିଲା ମତି ।
ପୁରୀରେ ରହିଲେ ସନ୍ୟାସୀ ହୋଇଲେ
ନିରନ୍ତର କଲେ ଯୋଗ ସାଧନା
ସାଧନାରେ ସିଦ୍ଧି ଲାଭ କଲେ ତହିଁ
ଦୂର କରି ମନୁ ସବୁ କାମନା ।
ଅନ୍ତିମ ଜୀବନ କଟାଇଲେ ଶେଷେ
ନୀଳାଚଳ ଧାମେ ନୀରବେ ରହି
ଭକତ ଗହଣେ ରହି ଚାଲିଗଲେ
ସଦା ସୁଧାଝରା ବଚନ କହି ।
ଉତ୍କଳ ମାତାର ଯୋଗ୍ୟତମ ସୁତ
ମହାନ ବିପ୍ଳବୀ ଧରଣୀଧର
ତୁମପରି ସୁତ ଜନମିବେ ସତେ
ହୃଦଭରା ଶ୍ରଦ୍ଧା ଅର୍ପଣ କରୁଛୁ
ସଶ୍ରଦ୍ଧ ପ୍ରଣାମ ଗ୍ରହଣ କର ।



# ମୁକୁନ୍ଦ ଦେବ

ଓଡ଼ିଶା ଶେଷ ସ୍ୱାଧୀନ ରାଜା ତୁମେ
ମୁକୁନ୍ଦ ହରିଚନ୍ଦନ
ଦାକ୍ଷିଣାତ୍ୟର ଚାଲୁକ୍ୟ ବଂଶରେ ହୋଇ ଜାତ
ବହିଥିଲ ତେଲେଙ୍ଗା ମୁକୁନ୍ଦ ଦେବ ନାମ ।
ପ୍ରତାପରୁଦ୍ର ଦେବଙ୍କ ସୈନ୍ୟଦଳେ ଆସି
ଯୋଗ ଦେଲ,
ବୀରତ୍ୱ ଦେଖାଇ ଶେଷେ ସେନାପତି ହେଲ ।
କଟକର ସିଂହାସନ ଅଧିକାର କରି
ଗଜପତି ସାମ୍ରାଜ୍ୟକୁ ଉଦ୍ଧରିବା ପାଇଁ
ସବୁ ବାଧା ବିଘ୍ନ ନେଲ ହସି ହସି ବରି ।
ସେ ସମୟେ ବଙ୍ଗଳାର ସୁଲତାନ
ଓଡ଼ିଶା ଦଖଲ ପାଇଁ ସୈନ୍ୟଦଳ ସହ
ଆସୁଥିଲେ ଧାଇଁ
ବୀରତ୍ୱର ସହ ତୁମେ ଯାଜପୁର ଠାରୁ
ଗଙ୍ଗାନଦୀ ପରିଯନ୍ତ ଦେଲ ଘଉଡ଼ାଇ ।
ବିଜୟର ସ୍ମାକୀ ସ୍ୱରୂପ
ଗଙ୍ଗାନଦୀ କୂଳେ କରି ପଥର ପାବଚ୍ଛ
ତ୍ରିବେଣୀ ଘାଟ ନାମରେ ଦେଲ ନୂଆରୂପ
ଓଡ଼ିଆମାନଙ୍କର ଏହା ବିଜୟ ସଙ୍କେତ
ମୁକୁନ୍ଦ ଘାଟ ନାମରେ ଏବେ ପରିଚିତ ।
ଆଠଟି ବରଷ ରାଜୁତି କାଳରେ
କରିଗଲ ବହୁକାମ
ପ୍ରଜା ବତ୍ସଳ ନରପତି ରୂପେ
ସ୍ମରଣୀୟ ତୁମ ନାମ ।

ଶାନ୍ତି ସ୍ଥାପନ କଲ
ଶାସନ କାଳରେ ସ୍ଥିରତା ଆଣି
ଦୃଢ଼କଲ ସୈନ୍ୟ ଦଳ ।
ନିର୍ମାତା ରୂପରେ ତୁମେ
କଲ ବହୁ କାମ
ପ୍ରଜାନୁରଂଜନ କରି ରଖିଗଲ ନାମ
ବ୍ରାହ୍ମଣ୍ୟ ଧର୍ମର କଲ ପୃଷ୍ଠ ପୋଷକତା
ମୁକୁନ୍ଦ ପୁର ଶାସନର ଥିଲ ପ୍ରତିଷ୍ଠାତା
ଯାଜପୁର ନିକଟସ୍ଥ ଗୋହୀରା ଟିକିରିଠାରେ
ମୁସଲମାନ ସେନା ସହ ଶେଷ ଯୁଦ୍ଧ କରି
ବୀରତ୍ୱ ଦେଖାଇ ଶେଷେ
ମରଣକୁ ନେଇଥିଲ ବରି
ଲିଭିଗଲ ଜୀବନ ପ୍ରଦୀପ
ଶେଷ ସ୍ୱାଧୀନ ନରପତି ଦୀପ
ହେଲା ନିର୍ବାପିତ ।



# ପ୍ରଥମ ସ୍ୱାଧୀନତା ସଂଗ୍ରାମ ପାଇକ ବିଦ୍ରୋହ

ଧନ୍ୟ ବରୁଣେଇ ଧନ୍ୟ ଖୋର୍ଦ୍ଧାଗଡ଼
ଧନ୍ୟ ହେ ପାଇକ ବୀର
ପ୍ରବଳ ପ୍ରତାପୀ ଇଂରେଜ ଆଗରେ
ନଇଁନାହିଁ ତୁମ ଶିର ।
ତୁମେ ଅଜେୟ ତୁମେ ଦୁର୍ଜେୟ
ରଖିଲ ଉତ୍କଳ ମାନ
ପାଇକ ବିଦ୍ରୋହ ମନରେ ପକାଇ
କରୁ ତୁମ ଜୟଗାନ ।
ସିପାହୀ ବିଦ୍ରୋହ ବହୁବର୍ଷ ପୂର୍ବେ
ଇଂରେଜ ବିରୁଦ୍ଧେ ଲଢ଼ି
ବିଦ୍ରୋହର ନିଆଁ ଜାଳି ଦେଲ ତୁମେ
ଦେବାକୁ ଇଂରେଜ ତଡ଼ି ।
କେତେ କେତେ ବୀର ସହିଦ ହୋଇଲେ
ଅନେକ ଲଭିଲେ କାରା
ବଣ ଜଙ୍ଗଲରେ ରହି ଯୁଦ୍ଧ କଲେ
ନ ପଡ଼ିଲେ କେବେ ଧରା
ବକ୍ସି ଜଗବନ୍ଧୁ ଜୟୀରାଜଗୁରୁ
ଦଳ ବେହେରାଙ୍କ କଥା
ପଢ଼ିଲେ ଶୁଣିଲେ ଯୁଦ୍ଧର କାହାଣୀ
ନଇଁଯାଏ ଆମ ମଥା ।
ଗୋଷ୍ପଦ ପୁଷ୍କର ଖ୍ୟାତି ଲାଭ କଲା
ଜାଣିଲେ ଜଗତ ଜନ
ସ୍ୱରୂପା ଅଂଶୁପା ହେଲା ଅଗୋଚର
ମୋହିଲେ ବି ଜନମନ ।

ସେ ରୂପେ ରହିଲା ପାଇକ ବିଦ୍ରୋହ
ଅଜଣା ଅଶୁଣା ହୋଇ
ପ୍ରଥମ ସଂଗ୍ରାମ ଲଢ଼ିଥିଲେ ମଧ୍ୟ
ମାନ୍ୟତା ପାଇଲା ନାହିଁ ।
ସ୍ୱାଧୀନତା ରଣେପ୍ରଥମ ସଂଗ୍ରାମ
ମାନୁବା ନ ମାନୁ କେହି
ମନ ଇତିହାସେ ଜାଗ୍ରତ ରହିବ
ପ୍ରଣମୁଛୁ ମୁଣ୍ଡ ନଇଁ ।

●

# ସେଦିନ ଯାଇଛି ଚାଲି

ସେ ଦିନ ଯାଇଛି ଚାଲି
ସାଧବ ପୁଅର ବୋଇତ ଯାଉନି
ଜାଭା ସୁମାତ୍ରା ଅବା ବାଲି
ସେ ଦିନ ଯାଇଛି ଚାଲି ।

ସେଦିନ ଯାଇଛି ଚାଲି
କଳିଙ୍ଗ ଶିଳାପି ନିହାଣ ମୁନରେ
ଆଙ୍କିଥିଲା ଛବି ପଥରବୁକୁରେ
ମନେ ପଡ଼େ କାଲିପରି
ସେଦିନ ଯାଇଛି ଚାଲି ।

ସେ ଦିନ ଯାଇଛି ଚାଲି
ବରୁଣେଇ ଗିରି ରହିଛି ଅନାଇ
ପାଇକ ବିଦ୍ରୋହ ସ୍ମୃତି ହୃଦେ ନେଇ
ମନେ ପଡ଼ିସବୁ ଲାଗେ ଖାଲିଖାଲି
ସେ ଦିନ ଯାଇଛି ଚାଲି

ସେ ଦିନ ଯାଇଛି ଚାଲି
କାହିଁଗଲେ ଆଜି ସେ କଳିଙ୍ଗ ବୀର
ଯା ବୀରତ୍ୱ ଆଗେ ନଇଁଯାଏ ଶିର
ମନ ଦୁଃଖ ହୁଏ ପୂର୍ବ କଥା ଭାଳି ଭାଳି
ସେଦିନ ଯାଇଛି ଚାଲି

ସେ ଦିନ ଯାଇଛି ଚାଲି
ଜାଗି ଉଠ ବାରେ ମୋ ଉତ୍କଳୀ ଭାଇ
ପୁରୁବ କୀରତି ଫେରାଇବା ପାଇଁ
ବିଭୁ ପଦେ କର ଅଳି
ସେ ଦିନ ଯାଇଛି ଚାଲି ।

ସେ ଦିନ ଯାଇଛି ଚାଲି
କୁହ ଜଗନ୍ନାଥ କରୁଛୁ ମିନତି
ନିତି ନିତି ଢାଳି ଆକୁଳ ପ୍ରଣତି
ସତେ କି ଆସିବ ସେହି ଦିନ ସବୁ ଫେରି
ଯେ ଦିନ ଯାଇଛି ଚାଲି ?

ସେ ଦିନ ଆସିବ ଫେରି
ପୂର୍ବ ପୁରୁଷଙ୍କ ଆମ୍ଭେ ହେ ଦାୟାଦ
ପୋଛି ଦେଇ ମନୁ ଯେତେକ ବିଷାଦ
ଦୃଢ଼କର ମନ ଜାଗୁ ସ୍ୱାଭିମାନ
ସେ ଦିନ ଆସିବ ଫେରି
ନିଶ୍ଚୟ ଆସିବ ଫେରି ।



# ଜୟ ମା'କଲ୍ୟାଣମୟୀ ଉତ୍କଳ ଜନନୀ

ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ତୁମକୁ କୋଳରେ ଧରି ସୁନ୍ଦର ଧରଣୀ
ତୁମେ ଶୋଭାମୟୀ
ତୁମେ ଦୟାମୟୀ
ତୁମେ ସ୍ନେହଁମୟୀ ମା'ଗୋ ଆନନ୍ଦ ଦାୟିନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ଜୟ କଲ୍ୟାଣମୟୀ ଉତ୍କଳ ଜନନୀ
ତୁମେ କୃପାମୟୀ ମା'ଗୋ ଅଭୟ ଦାୟିନୀ
ତୁମେ ତ୍ରାଣକର୍ତ୍ତ୍ରୀ
ତୁମେ ବିଦ୍ୟାଦାତ୍ରୀ
ତୁମେ କୃପାମୟୀ ମା'ଗୋ ଆଶିଷ ଦାୟିନୀ
ଜୟ ମା' କଲ୍ୟାଣ ମୟୀ ଉତ୍କଳ ଜନନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ଦୁଃଖୀଜନ ହିତକାରୀ ଶଙ୍କଟ ତାରିଣୀ
ତୁମେ ମମତାମୟୀ
ତୁମେ କରୁଣାମୟୀ
ମଧୁଝରା ବାଣୀତୁମ ଶାନ୍ତି ପ୍ରଦାୟିନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ନଈ ନାଳ ଲତା ଘେରା ସୁନ୍ଦର ବନାନୀ
ପ୍ରକୃତିର କୋଳେ
କି ଆନନ୍ଦ ମିଳେ
ରୂପରେ ମୋହିଲ ସର୍ବେ ହେ ବିଶ୍ୱମୋହିନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ,

ଜୟ ମା କଲ୍ୟାଣ ମୟୀ ଉତ୍କଳ ଜନନୀ
ବର୍ଣ୍ଣିବାକୁ ଗାଥା ତୁମ ଭାଷା ମୁଁ ପାଏନି
ହେ ବୀରା ଜନନୀ
ହେ ସ୍ୱାଭିମାନିନୀ
ଧନ୍ୟ ଧନ୍ୟ ମା' ତୁମେ ବୀର ପ୍ରସବିନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ଜୟ ମା' କଲ୍ୟାଣମୟୀ ଉତ୍କଳ ଜନନୀ
ଧନ ଧାନ୍ୟେ ପୁଷ୍ପେଭରା ମନ୍ଦିର ମାଳିନୀ
ତୁମ ଦିବ୍ୟ ଜ୍ୟୋତି
ପରକାଶେ ନିତି
ପ୍ରଣମୁଛି ତବ ପଦେ ଘେନ ମୋ ଦୟିନୀ
ଜୟ ମା କଲ୍ୟାଣମୟୀ ଉତ୍କଳ ଜନନୀ





'ଉତ୍କଳ ଗୀତି'ର କବି ଶ୍ରୀ ପ୍ରଫୁଲ୍ଲ କୁମାର ଶତପଥୀ ଅବିଭକ୍ତ କଟକ ଜିଲ୍ଲା, ଏବେର ଯାଜପୁର ଜିଲ୍ଲାର ସିଂହାପୁର ଗ୍ରାମରେ ଏକ ପ୍ରତିଷ୍ଠିତ ସଂଭ୍ରାନ୍ତ ପରିବାରରେ ୧୪.୬.୪୧ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ସ୍ୱର୍ଗତ ଦାମୋଦର ଶତପଥୀ ତତ୍‌କାଳୀନ ମଧୁପୁର ଇଷ୍ଟେଟ୍‌ରେ ଦେଓ୍ୱାନ ଥିଲେ । ମାତା ବାସନ୍ତୀଦେବୀ ଜଣେ ଧର୍ମ ପରାୟଣା ସୁଗୃହିଣୀ ଥିଲେ ।

କବି ଶ୍ରୀ ଶତପଥୀ ତତ୍‌କାଳୀନ ପ୍ରସିଦ୍ଧ ମଧୁପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରୁ ୭ମ ଶ୍ରେଣୀ ପାସ୍ କରି ଟାଙ୍ଗୀ ବିଦ୍ୟାପୀଠରୁ ମାଟ୍ରିକ୍ ପାଶ୍ କରିଥିଲେ । ତାପରେ ଯାଜପୁର ନୃସିଂହ ଚୌଧୁରୀ ମହାବିଦ୍ୟାଳୟରୁ ଆଇ.ଏ. ରେଭେନ୍ସା କଲେଜରୁ ବି.ଏ.ଏବଂ ୧୯୬୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରରୁ ରାଜନୀତି ବିଜ୍ଞାନରେ ଏମ୍.ଏ. ପାଶ୍ କଲେ । ପରେ ପରେ ସରକାରୀ ଚାକିରୀରେ କିଛିଦିନ ରହି ସେଥିପ୍ରତି ବୀତସ୍ପୃହ ହୋଇ ଶିକ୍ଷକତା କରିବାକୁ ଇଚ୍ଛା ପ୍ରକାଶ କଲେ ଏବଂ ମଧୁପୁର ହାଇସ୍କୁଲରେ ଶିକ୍ଷକତା କରି ୧୯୯୯ରେ ଅବସର ଗ୍ରହଣ କଲେ । ସେ ୧୯୮୧ ମସିହାରେ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଭୁବନେଶ୍ୱରରୁ ବି.ଇଡ଼ି ପାଶ୍ କଲେ ।

ସେ ଥିଲେ ସାହିତ୍ୟାନୁରାଗୀ, ଧର୍ମଶାଳାରେ ପ୍ରତିଷ୍ଠିତ 'ଗୋକର୍ଣ୍ଣିକା ସାହିତ୍ୟ ସମାଜ'ର ପ୍ରତିଷ୍ଠାତା ସଭ୍ୟ ଏବଂ ଏହି ଅନୁଷ୍ଠାନରେ ସେ ସାଧାରଣ ସଂପାଦକ ରୂପେ ମଧ୍ୟ କାର୍ଯ୍ୟ କରିଥିଲେ । ଏହି ସାହିତ୍ୟ ସମାଜର ମୁଖପତ୍ର 'ଗୋକର୍ଣ୍ଣିକାର'' ପ୍ରଥମ ସଂସ୍କରଣର ସେ ଥିଲେ ପ୍ରଧାନ ପୃଷ୍ଠପୋଷକ । ସେ ଅଞ୍ଚଳର ସାମାଜିକ, ଧାର୍ମିକ, ରାଜନୈତିକ ଓ ସାଂସ୍କୃତିକ ଜୀବନ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ତାଙ୍କଦ୍ୱାରା ପ୍ରକାଶିତ 'ପ୍ରବାହ' ପତ୍ରିକାର ସେ ଥିଲେ ସଂପାଦକ । ଏତଦ୍ ବ୍ୟତିତ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର କବିତା ଏବଂ ପ୍ରବନ୍ଧମାନ ପ୍ରକାଶିତ ହୋଇଛି । ଏବେ ମଧ୍ୟ ସେ ଶ୍ରୀମଦ୍ ଭଗବତ୍ ଗୀତା ଏବଂ ଶ୍ରୀମଦ୍‌ଭାଗବତ ଉପରେ ତାଙ୍କର ଗବେଷଣା ଚାଲୁ ରଖିଛନ୍ତି ।